

**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

**କାର୍ଯ୍ୟନିର୍ବାହୀ ସମ୍ପାଦିକା**

**ଅନସୂୟା ନନ୍ଦ**




**୬୩ ବର୍ଷ, ଚତୁର୍ଥ ସଂଖ୍ୟା**
**ନଭେମ୍ବର, ୨୦୧୩**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**

*ଦୂରଭାଷ*

**୨୪୨୨୫୯୭, ୨୪୨୦୦୭୫**
**ମୋ : ୯୮୬୧୦୬୪୮୯୧**

*email :*
nandaanasuya@hotmail.com
http://odishapublication.com


✤ ଅନ୍ୟାନ୍ୟ ବିଭାଗର ଲେଖକ- **ଡାକ୍ତର ପଦ୍ମନାଭ ବେହେରା, ଦେବେନ୍ଦ୍ର ନାଥ ପ୍ରଧାନ, କଳ୍ପତରୁ ନାୟକ, ମନୋଜ କୁମାର ତ୍ରିପାଠୀ**

### ✤✤✤✤✤ ଗଳ୍ପ ଓ ଜୀବନୀ



### ✤✤✤✤✤ କବିତା



### ✤✤✤✤✤ ଭ୍ରମଣ କାହାଣୀ



### ✤✤✤✤✤ ଜ୍ଞାନ-ବିଜ୍ଞାନ



### ✤✤✤✤✤ ମନୋରଞ୍ଜନ




**ରାଜକନିକା, କେନ୍ଦ୍ରାପଡ଼ାରୁ ଅଲିଭା ବେହେରା**-ସେପ୍ଟେମ୍ବର ସଂଖ୍ୟା 'ସଂସାର' ଭଲ ଲାଗିଲା । 'ଶିଶୁକୁ ନ ଭାବ ଶିଶୁଟିଏ' ଖୁବ୍ ଭାବଗର୍ଭକ; କିନ୍ତୁ ତାକୁ କ'ଣ ଆଉ ସରଳ କରାଯାଇ ପାରିବନି ? ଆଉ ଟିକେ ସହଜ ଶବ୍ଦ ନେବାକୁ ଅନୁରୋଧ । ଯେମିତି ସ୍ବର୍ଣକୁ ପରଶ କରିଛନ୍ତି, ଠିକ୍ ସେମିତି ।

**ଧଣ୍ଡାମୁଣ୍ଡା, ବଲାଙ୍ଗୀରରୁ ସ୍ବାମୀ ଶ୍ରୀ ଜୟଦେବ ଭାରତୀ**-- 'ମନେ ରଖିଥିବ ଦି'ପଦ କଥା' ଭଳି ଭାବଗର୍ଭକ ଲେଖାଟି ପାଇଁ ଲେଖକଙ୍କୁ ଅନେକ ଧନ୍ୟବାଦ । 'ଅଜାଙ୍କ ହଟହଟା' ଭଳି ବୁଢ଼ାଅଜାଙ୍କୁ ନାତିମାନେ ଏଭଳି ହଟହଟା ନ କରନ୍ତୁ । 'କୁନ୍‌କୁନାର ନୂଆ ସାଙ୍ଗ' ଗଳ୍ପଟି ପଢ଼ି ଆଖି ଛଳଛଳ ହୋଇଗଲା । ଲେଖକଙ୍କୁ ଧନ୍ୟବାଦ ।

**କେନ୍ଦ୍ରୀୟ ବିଦ୍ୟାଳୟ, ଭଦ୍ରକରୁ କମଳ କୁମାର ସାହୁ**-- ସୋନପୁରୀ ଉପଭାଷାର କବିତା 'ମନ୍ ଉନା କର୍‌ନାଇଁ'କୁ 'ସଂସାର' ପୃଷ୍ଠାରେ ସ୍ଥାନିତ କରିବା ଏକ ଅଭିନବ ପ୍ରୟାସ । ତେଲ୍‌ଗୁଅଧ୍ୟୁଷିତ ରାୟଗଡ଼ାରୁ ଉତ୍ସରିତ 'ଏଇ ତ ବାଧା' କବିତାଟିର ପଦଯୋଜନା, ପ୍ରସଙ୍ଗର ଉପସ୍ଥାପନା, ଭାବର ଆବେଗ ଯେନି ମନୋହର ଶୈଳୀରେ ରଚିତ ହୋଇଛି ।

**ଉଲୁଣ୍ଡାରୁ ଅମର କୁମାର ସିଂ**-- ଏ ମାସ ପତ୍ରିକାରେ 'ପୁରାତନ ଯୁଗର ଅସାମାନ୍ୟ ଭାରତୀୟଗଣ' ଲେଖାଟି ବେଶ୍ ଶିକ୍ଷଣୀୟ । ବିଶ୍ୱବାସୀଙ୍କ ପାଇଁ ସେମାନଙ୍କର ଅବଦାନ ଚିରସ୍ମରଣୀୟ । ଚିତ୍ରଟିକୁ ନିରୀକ୍ଷଣ କରନ୍ତୁ (୨୬ପୃ) ଏବଂ ପ୍ରାକୃତିକ ଦୃଶ୍ୟକୁ (୩୬ପୃ) ବେଶ୍ ମଜାଦାର । ସଂସାରର ପ୍ରତିଟି ସଂଖ୍ୟାରେ ଶିଶୁ କିଶୋର ଉପଯୋଗୀ ପ୍ରାର୍ଥନା ଗୋଟିଏ ଲେଖାଏଁ ସ୍ଥାନିତ କରାଗଲେ ଭଲ ହୁଅନ୍ତା । ବିଚାର କରିବେ ।

**ଅନୁଗୁଳରୁ ନରେଶ ଚନ୍ଦ୍ର ବେହେରା**-- ସଂସାର ମାଇଲ ଖୁଣ୍ଟ ପରେ ମାଇଲ ଖୁଣ୍ଟ ଅତିକ୍ରମ କରି ୬୩ ବର୍ଷରେ ପଦାର୍ପଣ କରି ଆଜି ସମସ୍ତଙ୍କର ପ୍ରିୟ ପତ୍ରିକା ହୋଇପାରିଛି । ସେପ୍ଟେମ୍ବର ମାସ ସଂସାର ବେଶ୍ ଭଲ ହୋଇଛି । ସମସ୍ତ ଲେଖା ଶିକ୍ଷଣୀୟ ।

**ବିଷମ କଟକ, ରାୟଗଡ଼ାରୁ ଚନ୍ଦ୍ର ପିଡ଼ିକାକା**-- ଏ ମାସର ସଂସାରର ପ୍ରଚ୍ଛଦ ଖୁବ୍ ଆକର୍ଷଣୀୟ ହୋଇଛି । ପ୍ରତ୍ୟେକ ବିଭାଗ ମନଛୁଆଁ ଓ ଶିକ୍ଷଣୀୟ ହୋଇଛି ।

# ✻✻✻✻ ଅଭିନନ୍ଦନ ✻✻✻✻

ଆମର ପରିଚିତ ଲେଖକ ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟିଙ୍କୁ ବଲାଙ୍ଗୀରରୁ ପ୍ରକାଶିତ ଶିଶୁ କିଶୋର ପତ୍ରିକା 'ଅକ୍ଷର' ତରଫରୁ 'ଅକ୍ଷର ଗଳ୍ପ ସମ୍ମାନ'ରେ ସମ୍ମାନିତ କରାଯାଇଛି । ଏଥିପାଇଁ 'ସଂସାର' ପରିବାର ଗୌରବାନ୍ୱିତ । ତାଙ୍କର ଲେଖନୀ ଅମର ହେଉ-- ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସହ ଅଭିନନ୍ଦନ ଜ୍ଞାପନ କରୁଛୁ ।

--'ସଂସାର' ପରିବାର

## ସଂସାରର ନିୟମାବଳୀ

୧ । ଚିଠିପତ୍ର ବା ଟଙ୍କା ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ ସହ ଠିକଣା ମନିଅର୍ଡର ଫର୍ମର କୁପନରେ ଲେଖିବେ । ଏହାଦ୍ୱାରା ସେମାନଙ୍କ ସହିତ ଯୋଗାଯୋଗ କରିବା ପାଇଁ ସହଜ ହେବ ।

୨ । କାଗଜରେ ଗୋଟିଏ ପାଖରେ ପରିଷ୍କାର ଅକ୍ଷରରେ ଲେଖା ପଠାଇବେ । ଅପ୍ରକାଶିତ ଲେଖା ଫେରାଇ ଦିଆଯାଏ ନାହିଁ ।

୪ । ଏଜେଣ୍ଟମାନଙ୍କ 'ସଂସାର' ବାବଦ ଦେୟ ୨୦ ତାରିଖ ପୂର୍ବରୁ ଆମ ପାଖରେ ପହଞ୍ଚିବା ଆବଶ୍ୟକ, ନଚେତ ପତ୍ରିକା ପଠାଇବା ସମ୍ଭବ ହେବନାହିଁ ।

**ଏ ମାସର ପ୍ରଚ୍ଛଦ**-- 'ଅଯାଚିତ ସାହାଯ୍ୟ' ବିଷୟରୁ ପ୍ରଦତ୍ତ ।

**ତେନ୍ତୁଳିନଣ୍ଡାରୁ ରାମଚନ୍ଦ୍ର ସାହୁ**-- ଏ ମାସରେ କେତେଗୁଡ଼ିଏ ତ୍ରୁଟି ଦୃଷ୍ଟିଗୋଚର ହେଲା । 'ଏକ କ୍ଷୁଦ୍ର ଦୀପ ଶିଖାଟିଏ, ସବୁଗୁଡ଼ିକ ଶିକ୍ଷଣୀୟ' ଇତ୍ୟାଦି । ସମ୍ପାଦନା ସମୟରେ ବ୍ୟାକରଣଗତ ତ୍ରୁଟିକୁ ନଜରରେ ରଖିଲେ ପତ୍ରିକାଟି ସରସସୁନ୍ଦର ହୋଇ-ପାରନ୍ତା ।

**କଟକ-୧୨ରୁ ଅଜିତାନନ୍ଦ ଗୋସ୍ୱାମୀ**-- ସଂସାରରେ 'ପୃଥିବୀର ସବୁଠାରୁ ଦୀର୍ଘତମ ସ୍ମୃତିସ୍ତମ୍ଭ ଲେଖାଟିରେ ୩୩ ମହଲା ବିଶିଷ୍ଟ ବୋଲି ଲେଖାଯାଇଛି । ମାତ୍ର ପୃଥିବୀର ସବୁଠାରୁ ଦୀର୍ଘତମ ସ୍ତମ୍ଭ ହେଉଛି ସି.ଏନ୍.ଟାୱାର, ଯାହାକି କାନାଡ଼ାର ଟରଣ୍ଟୋଠାରେ ଅବସ୍ଥିତ ।

# ବିଦାୟୀ ପକ୍ଷୀର ଉପହାର



ସୁଚିତ୍ରା ସାହୁ

ଦୃଷ୍ଟି ଆଢ଼ୁଆଳରୁ ଗାଁ'ଟା ଲୁଚିଯାଇଥିଲା ସତ; କିନ୍ତୁ ପଲ୍ଲୀ ପ୍ରକୃତିର ସୌନ୍ଦର୍ଯ୍ୟ ଆଖି ଆଗରେ ନାଚି ଉଠୁଥିଲା। ଦୂର ଆମ୍ବତୋଟାରୁ ଗାଁ'ର ପୋଖରି ତୁଠ ମନେପଡ଼େ। ମଥାଟେକି ଚାହିଁଥିବା ତାଳଗଛ ଅନେକ ଦୂରରେ ଥାଇ ହାତଠାରି ଡାକେ ଗାଁର ପ୍ରବେଶ ପଥକୁ ଚିହ୍ନଟ କରାଇଦେଇ।

ଝଙ୍କାଳିଆ ବରଗଛ ସ୍କୁଲ୍ ଆରପାଖେ ରହିଗଲେ ମନେପଡ଼େ ବାଲ୍ୟଚପଳତାର ସେହି ଦୁଷ୍ଟାମି ।

ବାପାମା'ଙ୍କ ସାଥିରେ ଗାଁ ଛାଡ଼ି ଯାଉଥିଲେ ମଧ୍ୟ ପୁପୁନ୍ ବୁଲିବୁଲି ଚାହିଁଥିଲା ତା'ଗାଁର ସବୁ ସୌନ୍ଦର୍ଯ୍ୟକୁ। ଆଖିରୁ ଲୁହ ପୋଛି ପକାଉଥିଲା। କିନ୍ତୁ ଅମାନିଆ ଲୁହକୁ ବାପାମା'ଙ୍କଠାରୁ ଲୁଚାଇ ପାରୁ ନ ଥିଲା। ସମସ୍ତ ସାଙ୍ଗସାଥୀଙ୍କୁ ପରିତ୍ୟାଗ କରିଥିଲା, ହେଲେ ତାର ଦୁଃଖ ନ ଥିଲା।

କିନ୍ତୁ ପ୍ରଥମ କରି ଚାହୁଁଥିବା ସହରର ସୁଖ ସ୍ୱପ୍ନ ପୁପୁନ୍‌କୁ ତୁଚ୍ଛ ଲାଗୁଥିଲା। ଆଜି ହିଁ ସେ ଦେଖି ପାରୁଥିଲା ତା' ଗାଁ ମାଟିର ସୌନ୍ଦର୍ଯ୍ୟଭରା ମମତାକୁ । ମା'କୋଳକୁ ନେଇ ବୁଝେଇଲେ, ''ସହରରେ ଏହାଠାରୁ ଅଧିକ ସୁନ୍ଦର ଘର ଓ ବୃକ୍ଷ ସବୁ ମିଳିବ ଧନ, ତୁ ଦୁଃଖ କରନା।'' ପୁପୁନ୍ କିନ୍ତୁ ମା'ଙ୍କୁ ଛୋଟିଆ ଅଳିଟିଏ କରିଥିଲା, ''ମୁଁ ଟିକେ ସେହି ତାଳଗଛ ଯାଏଁ ଯିବି ମା'। ତା'ପରେ ଆମେ ସହରକୁ ଯିବା।'' ପୁଅର ପାଗଳାମି ଦେଖି ମା' ତା' ସାଥିରେ ତାଳ ଗଛ ଯାଏଁ ଯାଇ ଫେରି ଆସିଲେ। ତା'ମୂଳରେ ଯାହା ଦେଖିଲା, ବିଶ୍ୱାସ କରି ପାରୁ ନ ଥିଲା ପୁପୁନ୍। କାରଣ ଯେଉଁ ବସାକୁ ଚାହିଁ ଚାହିଁ ସେ ପ୍ରତିଦିନ ସେହି ବାଟେ ସ୍କୁଲ୍ ଯାଉଥିଲା, ସେ ବସାଟି ତଳେ ପଡ଼ି ଛୁଆଦୁଇଟି ଛଟପଟ ହେଉଥିଲେ। ବିକଳ ଲାଗିଲା ତାକୁ । ଚଢ଼େଇମାନେ ଥିଲେ ଦୁଇଟି ବଣିଛୁଆ। ସେମାନଙ୍କୁ ପାଖରେ ପାଇ ପଛରେ ଛାଡ଼ି ଆସିଥିବା ଗାଁକୁ ଆଉ ନ ଝୁରି ପୁପୁନ୍ ଏଥର ସହରକୁ ଖୁସି ମନରେ ଆସିଥିଲା।

ଏହା ମଧ୍ୟରେ ଅନେକ ଦିନ ବିତିଗଲା । ପୁପୁନ୍ ଚଢ଼େଇ ଦୁଇଟିର ଯତ୍ନ ସବୁବେଳେ ନେଉଥିଲା। ତାକୁ ଗାଁର ସ୍ମୃତି ଭାବି ସାଇତି ରଖିଥିଲା; କିନ୍ତୁ ଅଚାନକ ଦିନେ ତା' ଛୋଟ ବଣିଛୁଆଟିର ମୃତ୍ୟୁ ଘଟିଲା। ପୁପୁନ୍‌କୁ ଏହା ଆଘାତ ଦେଲେ ବି ସେ ବଡ଼ ଚଢ଼େଇଟିକୁ ଚାହିଁ ଚାହିଁ ସବୁ ଭୁଲି ଯାଇଥିଲା। ଚଢ଼େଇଟି ମଧ୍ୟ ପୁପୁନ୍‌ର ଆଦରଯତ୍ନରେ ଦିନକୁ ଦିନ ବଡ଼ ହେବା ସହିତ ଭଲ ସାଥୀଟିଏ ହୋଇଯାଇଥିଲା। କୁନିଛୁଆଟିଏ ଭଳି ପୁପୁନ୍ ପଛେ ପଛେ ସବୁବେଳେ ଧାଉଁଥିଲା। କେତେବେଳେ କାନ୍ଧରେ ବସୁଥିଲା ତ କେତେବେଳେ ମୁଣ୍ଡରେ। ତା'ଲାଗି ପୁପୁନ୍ ଆଖିରୁ ନିଦ ହଜି ଯାଉଥିଲା। ତାକୁ କେବେ ନ ଦେଖିଲେ ସେ ଖାଉ ନ ଥିଲା କି ଶୋଉ ନ ଥିଲା। ତା' ଚଢ଼େଇ ମଧ୍ୟ ଠିକ୍ ସେହିପରି ତାକୁ ନ ପାଇଲେ ଉଡ଼ି ଉଡ଼ି ତା' ରହିବା ସ୍ଥାନ ସବୁ ଅଣ୍ଡାଳି ପକଉଥିଲା। ଆଉ

ଦୁଇଜଣ ଯେବେ ମିଳିଯା'ନ୍ତି, କିଛି ସମୟ ପାଇଁ ହେଉ ପଛେ ଆନନ୍ଦର ଲହରି ଖେଳି ଯାଉଥିଲା । ସେ ରାଗିଲେ ବଣିଟି ଅଭିମାନ କରିବସେ । ତାକୁ ସତେ ଯେମିତି ତା' ମା' ଭାବିନିଏ । ପୁପୁନ୍ ବି ତା ସହିତ ରାଗ ଓ ହସର ଖେଳ ଖେଳେ ।

ଶେଷରେ ଚଢ଼େଇଟି ସେ ଘରର ଜଣେ ହୋଇଥିଲା । ଭୋକ ଲାଗିଲେ ପୁପୁନ୍‌ର ମା'ପାଖକୁ ଚାଲିଯାଏ । ଜୋର୍ କରି ଖାଇବା ମାଗେ । ଛୋଟପିଲା ପରି ତା' ଡଙ୍ଗରଙ୍ଗ ଆଶ୍ଚର୍ଯ୍ୟ ଲାଗେ । ଖାଇବା ପିଇବା ସରିଲେ ସେ ପୁପୁନ୍ ଫେରିବା ଯାଏଁ ଖେଳେ, ଅପେକ୍ଷା କରେ । କେବେ ଯଦି ଡେରି ହୁଏ, ତା' ମା'ପରି ତାକୁ ବହୁତ ଖୋଜେ । ଏ ଡାଳରୁ ସେ ଡାଳକୁ ଯାଏ । ଆଉ ଫେରି ପାଇଲେ ତା'ଲାଗି ରୁଷି ବସେ ।

ଏମିତି ଏକ ମମତାରେ ଭିଜେଇଦେଇ ସେ ପ୍ରିୟ ଚଢ଼େଇଟି ଯେ ପ୍ରତାରଣା କରି ହଜିଯିବ, ସେ କଥା କେହି ବି ଭାବି ନ ଥିଲେ । ସବୁଦିନ ପରି ସେଦିନ ବି ପୁପୁନ୍‌ର ଅନୁପସ୍ଥିତିରେ ତାକୁ ସେ ଖୋଜି ହେଉଥିଲା । ଏଘରୁ ସେ ଘର, ଏ ଅଗଣାରୁ ଆର ଅଗଣା । ଅଥଚ ନିର୍ବୋଧ ପକ୍ଷୀଟି ଜାଣି ପାରିଲାନି ପଛରୁ ଛକି ବସିଥିବା ବିରାଡ଼ି ଶତ୍ରୁର ପଞ୍ଝା ତା' ଅପେକ୍ଷାକୁ ଧୂଳିସାତ କରି ମୁହୂର୍ତ୍ତକ ମଧ୍ୟରେ ରକ୍ତାକ୍ତ କରିଦେବ ବୋଲି ।

ସେ କେବଳ କିଛିଦିନର ଅତିଥିଟେ ସାଜି ସ୍ମୃତି ହୋଇ ରହିଗଲା ପରିବାର ପାଇଁ । କିନ୍ତୁ ତାର ଅଚାନକ ବିଦାୟରେ ପୁପୁନ୍ ଝୁରି ହେଉଥିଲା ତାକୁ ପ୍ରତି ମୁହୂର୍ତ୍ତରେ । ସେ ଖୋଜି ହେଉଥିଲା ସେ ଚଢ଼େଇଟିକୁ ।

ଗାଁ ମମତା ବଦଳରେ ସବୁ ମମତା ଅଜାଡ଼ି ଦେଇଥିଲା ସେହି ଚଢ଼େଇ ଉପରେ । ମା'ପରି ସ୍ନେହ, ଯତ୍ନ କରିଥିଲା । ଅଥଚ କେଉଁଠି ଟିକିଏ ଊଣା ରହିଗଲା ଯେ, ସେ ଠକି ଦେଇ ଚାଲିଗଲା । ତା' ବିନା ନୂତନ ସକାଳଟା ବି ନିଆରା ଲାଗୁଥିଲା । ଆଉ ତାର ସେହି ବିୟୋଗରେ ଦୁଃଖରେ ଭାଙ୍ଗି ପଡ଼ିଥିଲା ପୁପୁନ୍ । ପୁପୁନ୍ ନିତି ପଶ୍ଚାତ୍ତାପ କରୁଥିଲା-- ସେଦିନ ଯଦି ସେ ତା'ମା'ଆଗରେ, ଗାଁ ମାଟିରେ ଓ ତା'ସବୁଜିମା ପ୍ରକୃତି ଭିତରେ ଛାଡ଼ି ଦେଇଥାନ୍ତା, ଆଜି କଣ ସେ କାହା ଶିକାରରେ ମୃତ୍ୟୁକୁ ଆପଣେଇଥା'ନ୍ତା । ପ୍ରକୃତି ଭିତରେ ତା'ପରି ଚଢ଼େଇଟିଏ ଖୋଜୁଥିଲା ପୁପୁନ୍; ତଥାପି ମନ ବୁଝୁ ନ ଥିଲା । ହେଲେ ଯେ ସ୍ନେହ ପାଇଥାଏ, ସେ କେବେ ପ୍ରତାରଣା ଦେଇ ଚାଲିଯାଏନି । ବରଂ ପ୍ରତିବଦଳରେ ମୂଲ୍ୟବାନ ଉପହାରଟିଏ ଦେଇଯାଏ । ଠିକ୍ ଯେମିତି ଚଢ଼େଇଟି ସିନା ଚାଲିଯାଇଥିଲା, କିନ୍ତୁ ପୁପୁନ୍‌ର ଦୁଃଖକୁ ସେ ବୋଧେ ଅନୁଭବ କରିପାରୁଥିଲା ।

ପୁପୁନ୍‌ର ଆଖିରେ ଖାଲି ଥିଲା ସେହି ଚଢ଼େଇର ଦୃଶ୍ୟ, ଯାହାକୁ ପାଇବା ପାଇଁ ସେ ତାକୁ ଅନେକ କାଗଜର ଟୁକୁଡ଼ାରେ ଆଙ୍କି ଚାଲିଥିଲା । ଏମିତି ଖିଆଲି ପଣରେ ଆଙ୍କୁ ଆଙ୍କୁ କେବେ ତା ଅଜାଣତରେ ପ୍ରବେଶ କରିଥିଲା ଅବିକଳ ସେହି ଚଢ଼େଇଟି ସୁନ୍ଦର ରୂପଟିଏ ନେଇ । ତାର କୁନି ଆଖି ସତେ ଯେମିତି ଚାହିଁ ରହିଥିଲା ପୁପୁନ୍‌କୁ । ଏତେ ଦିନ ପରେ ତା' ଓଠରେ ହସଟିଏ ଫୁଟି ଉଠିଲା, କାରଣ ସେ ପାଇଯାଇଥିଲା ତା'ଚଢ଼େଇକୁ । ରଙ୍ଗ ତୂଳିର ଧାରେ ଧାରେ ଓଠ ଚିପି ହସୁଥିଲା ଚଢ଼େଇଟି । ପୁପୁନ୍‌ର କୋମଳ ହାତରେ ସେ କେବେ ଡେଣା ମେଲାଇ ଉଡ଼େ ତ, କେବେ ଗଛ ଡାଳରେ ଡିଏଁ । କେବେ ଅଗଣାରେ ବସେ ତ କେବେ ସେହି ଗାଁ ତାଳଗଛର ବସାରେ ଝୁଲୁଥାଏ ।



ଚିତ୍ରରେ ହେଉ ପଛେ, ଚିତ୍ରିତ ହୋଇ ଯାଇଥିଲା ତା'ଚଢ଼େଇଟି ସତରେ । ତା'ଶବ୍ଦ ନ ଶୁଭିଲେ ବି, ତା'ଅଗଣାକୁ, ତା' ହାତ ପାପୁଲିକୁ ସେ ନୂଆ ରୂପରେ ଫେରିଆସିଥିଲା ତ ! ଯେଉଁ ଚଢ଼େଇଟା ପାଇଁ ସେ ଦୁଃଖରେ ଭାଙ୍ଗି ପଡ଼ିଥିଲା, କେବଳ ତାରି ପାଇଁ ସେ ପାଇପାରିଛି ବିଶିଷ୍ଟ ଚିତ୍ରଶିଳ୍ପୀର ପରିଚୟ । ସେ କେବେବି ଦୂରେଇ ଯିବନି ତା'ହାତର ରଙ୍ଗତୂଳି ଓ କାଗଜର ଅଗଣାକୁ ପର କରିଦେଇ ।

*ଡାବର, ଅଡ଼ଗାଁ, ମାଛଗାଁ, ଜଗତସିଂହପୁର- ୭୫୪୧୧୯*

ଓଓ

---

**ଗତ ମାସର କବିତା କ୍ରିକେଟ୍ ରାଜାର ଉତ୍ତର--**

୧) ସୋବର୍ସ (ୱେଷ୍ଟଇଣ୍ଡିଜ୍‌ର ପୂର୍ବତନ କ୍ୟାପ୍‌ଟେନ୍) ଅଷ୍ଟ୍ରେଲିଆ, ୨) ୱେଷ୍ଟଇଣ୍ଡିଜ୍, ଭାରତ, ଅଷ୍ଟ୍ରେଲିଆ, ୩) ଇଂଲଣ୍ଡ, ୪) ପାଇନାହିଁ, ୫) ଭାରତ, ଶେଖର ଧାବନ, ୬) ଭାରତ (୫୦ ଓଭର ବିଶ୍ୱକପ୍ ୨ଥର, ଚମ୍ପିଆନ୍‌ସ ଟ୍ରଫି ୨ଥର, ଟ୍ୱେଣ୍ଟି ବିଶ୍ୱକପ୍ ୧ଥର) ସର୍ବମୋଟ୍ ୫ଟି ବିଶ୍ୱକପ୍ ଟାଇଟଲ୍ ।

# ଅନ୍ଧ

ଶ୍ରୀ ଶିବରାମ ମହାପାତ୍ର

ରାସ୍ତାରେ ଏକଦା ଜଣେ ଯୁବତୀଙ୍କୁ ଏକୁଟିଆ ଯାଉଥିବାର ଦେଖି କିଛି ଦୁର୍ବୃତ୍ତ ତାଙ୍କ ପିଛା କଲେ । ଏମିତି କିଛି ବାଟ ପିଛା କଲାପରେ ସେମାନେ ନିର୍ଜନ ସ୍ଥାନ ଦେଖି ଯୁବତୀଙ୍କୁ କାବୁ କରିବାକୁ ଚେଷ୍ଟା କଲେ । ସାହାଯ୍ୟ ଭିକ୍ଷା କରିବାକୁ ଯାଇ ଯୁବତୀଜଣଙ୍କ "ରକ୍ଷାକର- ରକ୍ଷାକର" ବୋଲି ଚିତ୍କାର କରିବାକୁ ଲାଗିଲେ । ଏହି ସମୟରେ ଦୁଇଜଣ ମଟର ସାଇକଲ ଆରୋହୀ ସେହି ରାସ୍ତା ଦେଇ ଗଲେ । ଯୁବତୀଜଣଙ୍କର ଚିତ୍କାର ସେମାନଙ୍କର କର୍ଣ୍ଣପାତ ହେଉଥିଲେ ସୁଦ୍ଧା ଅଯଥା କାହିଁକି ଏ ଘଟଣାରେ ମୁଣ୍ଡ ପୂରାଇବେ ଭାବି ତାଙ୍କ ବାଟରେ ଚାଲିଗଲେ ।

ଏହାର କିଛି ସମୟ ପରେ ଅନ୍ୟ ଦୁଇଜଣ ସାଇକେଲ୍ ଆରୋହୀ ସେହି ବାଟ ଦେଇ ଗଲାବେଳେ ଯୁବତୀଙ୍କ ଚିତ୍କାର ଶୁଣି ତାଙ୍କ ପାଖକୁ ଗଲେ; ହେଲେ ଦୁର୍ବୃତ୍ତଙ୍କ ଧମକଚମକ ଶୁଣି ଭୟରେ ସେ ସ୍ଥାନ ଛାଡ଼ି ପଳାଇଗଲେ । ଏତିକିବେଳେ ଭିକ୍ଷା ମାଗି ସାରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିବା ଜଣେ ଦୃଷ୍ଟିହୀନ ସେଇ ବାଟ ଦେଇ ଗଲେ । ନିର୍ଜନ ରାସ୍ତା ମଧ୍ୟରେ କାହାର ଗୋଟିଏ କରୁଣ ଚିତ୍କାର ଶୁଣି ତାଙ୍କ ମନକୁ ପାପ ଛୁଇଁଲା । ଝିଅଟିର ଚିତ୍କାରକୁ କାନେଇ କାନେଇ ଯନ୍ତ୍ରଚାଳିତ ପରି ସେହି ସ୍ଥାନରେ ସେ ଯାଇ ପହଞ୍ଚିଗଲେ । ଦୁର୍ବୃତ୍ତମାନେ ତାଙ୍କୁ ଦେଖି ଅନ୍ଧ ବୋଲି କହି ଥଟ୍ଟା ପରିହାସ କରିବାକୁ

ଲାଗିଲେ। ଏଥିରେ ଦୃଷ୍ଟିହୀନଜଣଙ୍କ ରାଗିଯାଇ ସେ ଧରିଥିବା ଆଶାବାଡ଼ିରେ ସେମାନଙ୍କ ଉପରେ ପ୍ରହାର କରିବାକୁ ଲାଗିଲା। ମାତ୍ର ସେମାନେ ଦଳବଦ୍ଧ ଥିବାରୁ ତାଙ୍କ ଉପରେ ପାଲଟା ଆକ୍ରମଣ କରି ରକ୍ତାକ୍ତ କରି ପକାଇଲେ। ଯୁବତୀଜଣଙ୍କୁ ନେଇ ସେହି ସ୍ଥାନ ଛାଡ଼ି ପଳେଇଲେ।

ଏହାପରେ ରକ୍ତାକ୍ତ ଅବସ୍ଥାରେ ମଧ୍ୟ ଦୃଷ୍ଟିହୀନଜଣଙ୍କ ଚାଲି ଚାଲି ଯାଇ ଥାନାରେ ଏସବୁ ବିଷୟରେ ତୁରନ୍ତ ଖବର ଦେଲା। ସବୁକିଛି ଶୁଣି ସାରିବା ପରେ ଥାନାବାବୁ ତାଙ୍କୁ ଡାକ୍ତରଖାନାରେ ଚିକିତ୍ସା ନିମନ୍ତେ ଭର୍ତ୍ତି କରାଇଦେଲେ। ଅବିଳମ୍ବେ ସହକର୍ମୀଙ୍କୁ ସାଥିରେ ନେଇ ଯୁବତୀଜଣଙ୍କ ବିଷୟରେ ଖୋଳତାଡ଼ ଆରମ୍ଭ କରିଦେଲେ। ପରେ ପରେ ଦୁର୍ବୃତ୍ତଙ୍କ କବଳରୁ ତାଙ୍କୁ ଉଦ୍ଧାର କରିବାରେ ସଫଳ ମଧ୍ୟ ହେଲେ।

ପିଲାମାନେ, ସବୁ ଦୃଷ୍ଟିହୀନ ବ୍ୟକ୍ତି କେବେ ବି ଅନ୍ଧ ନ ହୋଇପାରନ୍ତି। ସେମାନଙ୍କ ଦୃଷ୍ଟି ନ ଥିଲେ କ'ଣ ହେଲା, ଏକ ସରଳ ଓ ନିଷ୍କପଟ ହୃଦୟ ତ ଅଛି ! ସେଇଥିପାଇଁ ତ ଯେଉଁଠି ଦୃଷ୍ଟି ଥିବା ଲୋକେ ଅନ୍ଧ ପରି ଆଚରଣ କଲେ, ସେଇଠି ଦୃଷ୍ଟି ନ ଥାଇ ମଧ୍ୟ ଦୃଷ୍ଟିହୀନଜଣଙ୍କ ଦୃଷ୍ଟିଥିବା ଲୋକ ପରି ଯୁବତୀଙ୍କ ଆର୍ତ୍ତଚିତ୍କାରକୁ ସ୍ୱଚକ୍ଷୁରେ ଦେଖିପାରିଛନ୍ତି ଆଉ ତାଙ୍କୁ ରକ୍ଷା କରିବାକୁ ପ୍ରାଣପଣେ ଉଦ୍ୟମ କରିଛନ୍ତି। ଏକଥା ସବୁବେଳେ ମନେରଖିବ ପିଲାମାନେ, ଯେ ଅନ୍ଧ ବୋଲି ସମ୍ବୋଧନ କରି କେବେ କାହା ହୃଦୟରେ ବ୍ୟଥା ଦେବନି। ସୁତରାଂ ସେହିମାନେ ହିଁ ହେଉଛନ୍ତି ପ୍ରକୃତ ଅନ୍ଧ, ଯେଉଁମାନେ କି ସମାଜରେ ଦୁର୍ନୀତି, ଅନ୍ୟାୟ, ଅତ୍ୟାଚାରକୁ ସ୍ୱଚକ୍ଷୁରେ ଦେଖି ସୁଦ୍ଧା ଅନ୍ଧ ପରି ଆଖି ବୁଜିଦିଅନ୍ତି ତଥା ଏହାର ପ୍ରତିରୋଧ କରନ୍ତି ନାହିଁ।

*ମହୀଉମା, କୋରଡ଼ା, ନୟାଗଡ଼- ୭୫୨୦୮୩* ❖❖

ପାନୀୟଜଳ ଶରୀରରେ ବିଭିନ୍ନ ପ୍ରକାରରେ ଫଳପ୍ରଦ ହୋଇଥାଏ। ଶୋଇ ଉଠିଲା ପରେ ଯଦି ଦୁଇଗ୍ଲାସ୍ ପାଣି ପିଆଯାଏ, ଏହା ଶରୀରର ଅଭ୍ୟନ୍ତର ଶିରାପ୍ରଶିରାରେ ସଂଚାଳନ କାମକୁ ସରଳ କରିଥାଏ।

ଖାଦ୍ୟଗ୍ରହଣର ତିରିଶ ମିନିଟ୍ ପୂର୍ବରୁ ଗୋଟିଏ ଗ୍ଲାସ ପାଣି ପିଇଲେ ଏହା ପାଚନ କ୍ରିୟାରେ ସାହାଯ୍ୟ କରେ।

ଗାଧୋଇ ସାରି ଗୋଟିଏ ଗ୍ଲାସ୍ ପାଣି ପିଇଲେ ନିମ୍ନ ରକ୍ତଚାପ ହ୍ରାସ କରିଥାଏ ଏବଂ ଶୋଇବା ପୂର୍ବରୁ ଏକଗ୍ଲାସ୍ ପାଣି ପିଇଲେ ହୃତ୍‌ଘାତର ସମ୍ଭାବନାକୁ ହ୍ରାସ କରିଥାଏ ।



# ମନରେ ଯଦି

ଜୟନ୍ତିକା

ତୁମକୁ ଏବେ କାହାଣୀ ପିଲେ
କହିବି ଆଉ ନାହିଁ,
ମୋ'ଠାରୁ ବେଶି ଜାଣିଛ ତୁମେ
ତୁମଠୁ ବୋକା ମୁହିଁ ।୧।
ଦିଗ୍‌ବଳୟ ସୀମାକୁ ଲାଗି
ରହସ୍ୟ ଥିଲା ଯାହା,
ହୋଇଛି ଆଜି ସବୁ ତନଖି
ଆଖି ଆଗରେ ଥୁଆ ।୨।
ଜାଲୁଜାଲୁଆ ଅଂଧାର ନାଇଁ
ନାଇଁ ଡରୁଆ ରାତି,
ଦିନରାତିର ଫରକ ନାଇଁ
ଜଳେ ବିଜୁଳିବତି ।୩।
ସରଗ କଥା ଶୁଣିବା ପାଇଁ
ସରାଗ ନାଇଁ କାହିଁ,
ସରଗ ନୁହେଁ ସୌରଜଗତ
ଲେଖିଛି ତୁମ ବହି ।୪।
ଘନ ଅନ୍ଧାର ବନସ୍ତ ନାଇଁ
ନାହାନ୍ତି ରାଣୀରାଜା,
ଅସୁର ନାଇଁ ଅସୁରୁଣୀ ବି
ଅବା ଡରୁଆ ପ୍ରଜା ।୫।
ମାଛକୁଆଁରୀ ଶୋଇନି ଆଉ
ସାଗର ବାଲି ତଟେ,
ଏକଶିଙ୍ଘିଆ ଘୋଟକ ଯାହା
ପବନ ବେଗେ ଛୁଟେ ।୬।
ଗାଡ଼ିମଟର କୋଠା ବଜାର
ବଢୁଛି ଯେତେ ଯେତେ,
ମଣିଷ ମନୁ ଯାଉଛି ହଜି
ସ୍ନେହ ସରାଗ ସେତେ ।୭।
ମନରେ ଯଦି ସପନ ନାଇଁ
ଆବେଗ ନାଇଁ କାହିଁ,
ଜୀବନ ହେବ ଯନ୍ତ୍ର ପରିକା
ଶୁଖିଲା ଏକ ନଈ ।୮।

*ରାଜଧାନୀ କଲେଜ, ଭୁବନେଶ୍ୱର*



ଆଦରଯତ୍ନ ପାଇଲେ ସବୁ ଶିଶୁ ବଢ଼ନ୍ତି, ମାତ୍ର ଶତକଡ଼ା ୭୭ ପେଙ୍ଗୁଇନ୍ ଛୁଆ ଏହି କାରଣରୁ ମରିଯା'ନ୍ତି । ଯଦି ମା' ପେଙ୍ଗୁଇନ୍ ତା' ଛୁଆକୁ ଛାଡ଼ି କୌଣସି କାରଣରୁ ମରିଯାଏ, ତେବେ ସେ ମାତୃହରା ଛୁଆକୁ ପାଳିବା ପାଇଁ ଅନ୍ୟ ପେଙ୍ଗୁଇନ୍‌ମାନେ ଏପରି ଛଡ଼ାଛଡ଼ି ହୁଅନ୍ତି ଯେ ଟଣାଓଟରାରେ ସେ ଛୁଆଟି ମରିଯାଏ ।

# ମୟୂର ସିଂହାସନ

ହିନ୍ଦୁସ୍ଥାନର ପଞ୍ଚମ ମୋଗଲ ବାଦଶାହା ଶାହାଜାହାନଙ୍କ ପରି ସୌନ୍ଦର୍ଯ୍ୟପ୍ରେମୀଙ୍କ ଦୃଷ୍ଟାନ୍ତ ବୋଧହୁଏ ବିଶ୍ୱ ଇତିହାସରେ ବିରଳ। ସେ ଥିଲେ ବିଶ୍ୱପ୍ରସିଦ୍ଧ ତାଜମହଲ ଓ ପ୍ରସିଦ୍ଧ 'ମୟୂର ସିଂହାସନ'ର ନିର୍ମାତା। ନାଦିର୍ ସାହା ଭାରତ ଆକ୍ରମଣ ସମୟରେ ମୟୂର ସିଂହାସନର କାରୁକାର୍ଯ୍ୟରେ ମୁଗ୍ଧ ହୋଇ ଏହାକୁ ନେଇଯାଇଥିଲେ।

କୁହାଯାଏ ଯେ ମୋଗଲ ସମ୍ରାଟମାନେ ମୟୂରର ସୌନ୍ଦର୍ଯ୍ୟରେ ଏତେ ପରିମାଣରେ ଆକୃଷ୍ଟ ହୋଇଥିଲେ ଯେ ସେମାନଙ୍କର କଳାସ୍ଥାପତ୍ୟରେ ମୟୂରକୁ ମୁଖ୍ୟ ସ୍ଥାନ ଦେଇଥିଲେ। ମୋଗଲ ଶାସନ ସମୟରେ ରାଜଉଦ୍ୟାନରେ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ମୟୂର ଥିଲେ। ଏହାର ନିଚ୍ଛକ ପ୍ରମାଣ ହେଉଛି ଶାହାଜାହାନଙ୍କ ବହୁମୂଲ୍ୟ ରତ୍ନଖଚିତ ମୟୂର ସିଂହାସନ।

ସେ ଦିନେ ଆଗ୍ରହ ପ୍ରକାଶ କରିଥିଲେ ମୟୂର ପରି ଏକ ରାଜସିଂହାସନ ନିର୍ମାଣ କରାଇବାକୁ। ତାଜମହଲ ନିର୍ମାଣ ଖର୍ଚ୍ଚର ଦୁଇଗୁଣ ଖର୍ଚ୍ଚ କରି ଏହି ସିଂହାସନ ନିର୍ମାଣ କରିଥିଲେ। ବହୁ ଦୁର୍ମୂଲ୍ୟ ରଙ୍ଗିନ୍ ମର୍କତ, ମଣିମୁକ୍ତାଖଚିତ ୧୨ଟି ଖମ୍ବ ନିର୍ମାଣ କରାଯାଇ ତା' ଉପରେ ସୁନ୍ଦର ପଥର ଓ ଅଳଙ୍କାରଖଚିତ ଚାନ୍ଦୁଆ ତିଆରି କରାଯାଇଥିଲା। ଚାନ୍ଦୁଆ ଉପରେ ନିର୍ମିତ ଦୁଇଟି ମୟୂର ଶରୀରରେ ଦୁଷ୍ପ୍ରାପ୍ୟ ପଦ୍ମରାଗମଣି, ଶ୍ୱେତହୀରା, ଚନ୍ଦ୍ରକାନ୍ତ ମଣି, ମୁକ୍ତା ଓ ରତ୍ନଖଚିତ ହୋଇଥିଲା। ଦୀର୍ଘ ସାତବର୍ଷ ଲାଗିଥିଲା ଏହାର ନିର୍ମାଣ କାର୍ଯ୍ୟ ସମ୍ପନ୍ନ ହେବା ପାଇଁ।

ଏହି ମୟୂର ସିଂହାସନ ନିର୍ମାଣ ଶେଷରେ ଶାହାଜାହାନ କହିଥିଲେ ଯେ ଜୀବନ୍ତ ମୟୂରର ସୌନ୍ଦର୍ଯ୍ୟ ଏହି ମୟୂର ସିଂହାସନରେ ମିଳିବ କିପରି ! କିନ୍ତୁ ଏହି ସୌନ୍ଦର୍ଯମୟୀ ପକ୍ଷୀକୁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି କେବଳ ସେ ହିଁ ଦେଇଯାଇଛନ୍ତି। ପ୍ରସିଦ୍ଧ ଖ୍ରୀଷ୍ଟିଆନ୍ ଦାର୍ଶନିକ ସେଣ୍ଟ୍ ଅଗଷ୍ଟାଇନ୍ ନିଜ ଦର୍ଶନରେ ବର୍ଣ୍ଣନା କରି ଲେଖିଛନ୍ତି ଯେ, "ଆତ୍ମାର ଅମର ତତ୍ତ୍ୱର ପ୍ରତୀକ ମୟୂର। କାରଣ ଏହାର ମାଂସ ପଚେ ନାହିଁ।" ୧୯୬୩ ମସିହାରେ ଭାରତ ସରକାର ନୀଳ ମୟୂରକୁ 'ଜାତୀୟ ପକ୍ଷୀ' ରୂପେ ଘୋଷଣା କରିଥିଲେ।

ଡାକ୍ତର ପଦ୍ମନାଭ ବେହେରା

*ପ୍ରଶାନ୍ତି ଆପାର୍ଟମେଣ୍ଟ୍, ଦେଉଳସାହି, କଟକ-୮*

# ଚତୁର୍ମୁଖ ଜୈନ ମନ୍ଦିର-ରଣକପୁର

ଡ.ବିଭୁଦତ୍ତ ମିଶ୍ର

ରାଜସ୍ଥାନର ଉଦୟପୁର ସହରଠାରୁ ୨୦୦ କି.ମି. ଦୂରରେ ରିସବଦେବ ମହାପ୍ରଭୁଙ୍କ ଜୈନ ମନ୍ଦିର ଅବସ୍ଥିତ । ଆରାବଳି ପର୍ବତମାଳା ପାଦଦେଶରେ ମାର୍ବଲ ପଥର ନିର୍ମିତ ସୁନ୍ଦର ଜୈନ ମନ୍ଦିର ଏହାର ଭାସ୍କର୍ଯ୍ୟ, କାରୁକାର୍ଯ୍ୟ ତଥା ଖୋଦିତ କଳାକୃତି ପାଇଁ ବିଶ୍ୱପ୍ରସିଦ୍ଧ । ଏହି ମନ୍ଦିର କାର୍ଯ୍ୟ ୧୪୪୬ ମସିହାରେ ମେୱାର ରାଜା ରାଣାକୁମ୍ଭଙ୍କ ଶାସନ କାଳରେ ଆଚାର୍ଯ୍ୟ ସୋମସୁନ୍ଦରଜୀ ମନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ଆରମ୍ଭ ହୋଇଥିଲା । ମହାନ୍ କଳାକୃତି ରୂପରେଖ ଦେବାରେ ତାଙ୍କୁ ଧରଣୀସାହ ନାମକ ବ୍ୟକ୍ତି ସାହାଯ୍ୟ କରିଥିଲେ ।




କିମ୍ବଦନ୍ତୀରେ ସ୍ୱର୍ଗରେ ଦେବତା ବ୍ୟବହାର କରୁଥିବା ବିମାନସଦୃଶ ଦେଖାଯାଉଥିବା ଏହି ମନ୍ଦିର ନିର୍ମାଣ ମାଦ୍ରି ପାହାଡ଼ର ମଡ଼ର୍ଗ ନାମକ ଗ୍ରାମରେ ଆରମ୍ଭ କରିବା ପାଇଁ ରାଜା ପରାମର୍ଶ ଦେଇଥିଲେ । ସମୟକ୍ରମେ ଏହା ସହରରେ ପରିବର୍ତ୍ତନ ସାହା ରାଜାଙ୍କ ନାମ ଅନୁସାରେ 'ରଣକପୁର' ଭାବେ ଲୋକମାନଙ୍କ ଦ୍ୱାରା ପରିଚିତ ହେଲା । ୫୦ବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ ସତ୍ତ୍ୱେ ମନ୍ଦିର କାର୍ଯ୍ୟ ଶେଷ ହେବା ସମ୍ଭବ ନ ହେବାରୁ ୧୪୯୬ ମସିହାରେ ଧରଣୀସାହା ଓ ଆଚାର୍ଯ୍ୟ ସୋମସୁନ୍ଦରଜୀଙ୍କ ଦ୍ୱାରା ମୁଖ୍ୟଦେବତାଙ୍କ ମୂର୍ତ୍ତି ସ୍ଥାପନ କରାଯାଇଥିଲା ।

ଏଠାକୁ ଭ୍ରମଣରେ ଆସୁଥିବା ପର୍ଯ୍ୟଟକ ତିନି ମହଲା ବିଶିଷ୍ଟ ମନ୍ଦିରର ଅସଂଖ୍ୟ କଳା, ଭାସ୍କର୍ଯ୍ୟ ଅଳଂକୃତ ତୋରଣ, ମାର୍ବଲରେ ଖୋଦିତ ଅଭିନବ କଳାକୃତି, ଅତି ଉଚ୍ଚ ସ୍ତମ୍ଭ, ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ସୌଧଚୂଡ଼ାକୁ ଦେଖି ମନ୍ତ୍ରମୁଗ୍ଧ ଓ ଆଚମ୍ବିତ ହୋଇଥାନ୍ତି । ମୁଖ୍ୟ ମନ୍ଦିରରେ ଚାରୋଟି ପ୍ରବେଶ ଦ୍ୱାର ସହ ଧଳା ମାର୍ବଲ ନିର୍ମିତ ଚାରୋଟି ଭଗବାନ ଆଦିନାଥଙ୍କର ୭୨ ଇଞ୍ଚର ବୃହତ୍ ମୂର୍ତ୍ତି ଶୋଭା ପାଉଛି । ଦ୍ୱିତୀୟ ଓ ତୃତୀୟ ମହଲାର ପବିତ୍ର ସ୍ଥାନରେ ଏକପ୍ରକାର ଚାରୋଟି ଆଦିନାଥ ଜୈନ ମୂର୍ତ୍ତି ସ୍ଥାପନ ସହ ଚତୁର୍ମୁଖ ଜୈନମନ୍ଦିର ଭାବେ ସାରା ବିଶ୍ୱରେ ପରିଚିତ । ଏହି ମନ୍ଦିରକୁ ଭକ୍ତମାନେ ବିଭିନ୍ନ ନାମରେ ନାମିତ କରିଛନ୍ତି । ଯଥା- ଚତୁର୍ମୁଖ ପ୍ରସାଦ, ତ୍ରିଭୁବନ ବିହାର, ଧରଣ ବିହାର ଓ ତ୍ରୈଲୋକ୍ୟ ଦୀପକ ପ୍ରସାଦ । ମୁଖ୍ୟ ମନ୍ଦିରରେ ୭୬ଟି ଛୋଟ ମନ୍ଦିର, ଚାରୋଟି ରଙ୍ଗ ମଣ୍ଡପ ଓ ଚାରୋଟି ମୁଖ୍ୟ ଦେବତା ସ୍ଥଳ ଥିବା ସହ ମନ୍ଦିର ବେଢ଼ା ଚାରି ପାଖରେ ୮୪ଟି ଛୋଟବଡ଼ ମନ୍ଦିର ଥିବାର ପରିଲକ୍ଷିତ ହୋଇଥାଏ । ଜୈନଧର୍ମାବଲମ୍ବୀଙ୍କର ମତ ଅନୁସାରେ-- ମନୁଷ୍ୟକୁ ସଂସାରରେ ୮୪ ଲକ୍ଷ ଥର ବିଭିନ୍ନ ରୂପରେ ଜନ୍ମ ଓ ମୃତ୍ୟୁ ଗ୍ରହଣ କରିବାକୁ ପଡ଼ିଥାଏ ।

ସୁନ୍ଦର ଭାବରେ କାରୁକାର୍ଯ୍ୟରେ ଅଳଂକୃତ ଚତୁଃପାର୍ଶ୍ୱରେ ଥିବା ମେଘନାଦ ମଣ୍ଡପରେ ୪୦ ଫୁଟ୍ ଉଚ୍ଚ ସ୍ତମ୍ଭଗୁଡ଼ିକର ମୂଲ୍ୟବାନ ପଥର ଖୋଦିତ ହାର ପରି ଝୁଲୁଥିବା କଳା ଓ ଭାସ୍କର୍ଯ୍ୟ ପର୍ଯ୍ୟଟକଙ୍କୁ ମନ୍ତ୍ରମୁଗ୍ଧ କରିଥାଏ । ଏହି ସ୍ତମ୍ଭ ଦିନ ମଧ୍ୟରେ ପ୍ରତ୍ୟେକ ଘଣ୍ଟାରେ ସୁନା ରଙ୍ଗରୁ ଇଷତ୍ ଧଳା-ନୀଳକୁ ପରିବର୍ତ୍ତିତ ହୋଇଥାଏ । ୧୦୮ କି.ଗ୍ରା ଓଜନର ଦୁଇଟି ବଡ଼ ଘଣ୍ଟା ରହିଛି, ଯାହା ବାଜିଲେ ସ୍ୱର ଓ ଧ୍ୱନି ସହ ସଙ୍ଗୀତ ବାହାରିଥାଏ । ମୁଖ୍ୟ ମନ୍ଦିର ବ୍ୟତୀତ ଏଠାରେ ଚୌମୁଖ, ପାରସନାଥ, ଅମ୍ବାମାତା ଓ ସୂର୍ଯ୍ୟ ମନ୍ଦିର ରହିଛି, ଯାହାର ସୁନ୍ଦରତା ଦେଖଣାହାରୀଙ୍କୁ ଆଚମ୍ବିତ କରିଥାଏ । ମନ୍ଦିର ଛାତର ଭିତର ପାଖ ବର୍ତ୍ତୁଳାକାର ଗମ୍ବୁଜରେ ଐତିହାସିକ ଘଟଣାବଳୀକୁ ଦର୍ଶାଉଅଛି । ପ୍ରସ୍ତର ଫଳକରେ ଖୋଦିତ ଏକ 'ନାଗ ସାପ ଏବଂ ଏହାର ୧୦୮ ଫଣା' ବିଶେଷ ଭାବେ ଦୃଷ୍ଟି ଆକର୍ଷଣ କରିବା ସହ ପାରସନାଥ ମହାପ୍ରଭୁଙ୍କ ମହିମା ତଥା ଜ୍ଞାନକୁ ଦର୍ଶାଇଥାଏ ।

ଏହି ମନ୍ଦିରର ଅନ୍ୟ ଏକ ବିଶେଷତ୍ୱ ହେଉଛି- ବଡ଼, ଛୋଟ ଓ ଓସାରିଆ ଭାବେ ଖୋଦିତ ୧୪୪ଟି ଭିନ୍ନ ଭିନ୍ନ ସ୍ତମ୍ଭ, ଯାହା କୁଶଳୀ କାରିଗରମାନଙ୍କର କଳାକୌଶଳର ଏକ ଅଭିନବ କୃତିକୁ ଦେଖାଇବା ସହ ଭଗବାନଙ୍କ ମୂର୍ତ୍ତି ଦର୍ଶନରେ କୌଣସି ବାଧକ ସାଜି ନ ଥାଏ । ମନ୍ଦିରର ଉତ୍ତର ଦିଗରେ ବହୁ ପୁରାତନ ବଉଳଗଛ ଏବଂ ଭଗବାନ ରିସବଦେବଙ୍କର ପାଦ ଚିହ୍ନ ଏକ ମାର୍ବଲ ପଥରେ ଦେଖିବାକୁ ମିଳିଥାଏ । ସୁନ୍ଦର ପ୍ରତିମୂର୍ତ୍ତିଗୁଡ଼ିକର ବାହ୍ୟ ଆକ୍ରମଣ ସମୟରେ ତଥା ପ୍ରତିକୂଳ ପରିସ୍ଥିତିରେ ନିରାପଦ ରଖିବା ପାଇଁ ନଅଟି ଭୂଗର୍ଭସ୍ଥ ପ୍ରକୋଷ୍ଠ ନିର୍ମାଣ ସମ୍ପୂର୍ଣ୍ଣ ମନ୍ଦିରକୁ ଅଧିକ ସୁରକ୍ଷିତ ରଖିବାରେ ସାହାଯ୍ୟ କରିଥିବାର ଅନୁମାନ କରାଯାଏ ।

ପ୍ରତିବର୍ଷ ହଜାର ହଜାର ସଂଖ୍ୟାରେ ବିଭିନ୍ନ ଧର୍ମାବଲମ୍ବୀ ପର୍ଯ୍ୟଟକ ଏଠାକୁ ଆସିଥାଆନ୍ତି । ସେମାନଙ୍କର ରହିବା ପାଇଁ ଧର୍ମଶାଳାର ବ୍ୟବସ୍ଥା ଓ ନିରାମିଷ ଭୋଜନ ଇତ୍ୟାଦି ପରିଚାଳିତ ସଂଗଠନ ଦ୍ୱାରା କରାଯାଇଥାଏ । ୨୦୦୯ ମସିହାରେ ଭାରତୀୟ ଡାକବିଭାଗ ଏହି ପରମ୍ପରାସମ୍ପନ୍ନ ମନ୍ଦିର ସ୍ମୃତିରେ ଡାକଟିକେଟ୍ ପ୍ରଚଳନ କରିଥିଲେ ।

*କେନ୍ଦ୍ରୀୟ ମଧୁର ଜଳଜୀବ ଅନୁସନ୍ଧାନ ସଂସ୍ଥା, କୌଶଲ୍ୟାଗଙ୍ଗା, ଭୁବନେଶ୍ୱର- ୨*

❖❖

# ସୂର୍ଯ୍ୟ ଚନ୍ଦ୍ର ଆକାଶରେ ରହନ୍ତି କାହିଁକି ?

ଡକ୍ଟର ଉଦ୍ଧବ ଚରଣ ନାୟକ

ଅନେକ ଦିନ ତଳର କଥା । ସେତେବେଳେ ଚନ୍ଦ୍ର ସୂର୍ଯ୍ୟ ରହୁଥିଲେ ପୃଥିବୀରେ । ଜଳ ଥିଲେ ସେମାନଙ୍କର ପରମ ବନ୍ଧୁ । କେତେବେଳେ କେମିତି ସୂର୍ଯ୍ୟ ଓ ଚନ୍ଦ୍ର ଜଳଙ୍କ ଘରକୁ ବୁଲିବାକୁ ଆସନ୍ତି । ଜଳଙ୍କ ସହ ଆଳାପ ଆଲୋଚନା କରି ଫେରିଯାଆନ୍ତି । ହେଲେ ଜଳ କେବେ ବି ସୂର୍ଯ୍ୟଚନ୍ଦ୍ରଙ୍କ ଘରକୁ ବୁଲିଯାଆନ୍ତି ନାହିଁ । ଦିନେ ସୂର୍ଯ୍ୟ ଜଳଙ୍କୁ ପଚାରିଲେ, "ଆମେ ତ ବହୁତ ଥର ତୁମ ଘରକୁ ବୁଲିଯାଉଛୁ, ହେଲେ ତୁମେ ତ ଦିନେ ହେଲେ ଆମ ଘରକୁ ବୁଲି ଆସୁନ । କଥା କ'ଣ ?"

ସୂର୍ଯ୍ୟଙ୍କ କଥା ଶୁଣି ଜଳ ହସି ହସି କହିଲେ, "କ'ଣ କରିବି ଭାଇ ! ମୋର ଅଛନ୍ତି ଅନେକ ବନ୍ଧୁ । ମୁଁ ଗଲେ ତ ସେମାନେ ମୋ ସହିତ ନିଶ୍ଚିତ ଯିବେ । ତୁମ ଘରଟି ତ ହେଲା ନିହାତି ଛୋଟ । ଟକିଏ ବଡ଼ ବି ନୁହେଁ । ମୋତେ ସେଥିପାଇଁ ଡର ମାଡୁଛି । ସେମାନେ ତୁମ ଘରକୁ ଗଲେ କେଉଁଠି ବସିବେ? ସେମାନେ ଯେମିତି ହେଲେ ତ ମୋ ସହିତ ଯିବେ । ମୋତେ ଛାଡ଼ି ତିଳେ ହେଲେ ରହିପାରିବେ ନାହିଁ । ସେଇଥିପାଇଁ ମୋ ମନରେ ଚିନ୍ତା ।"



ସୂର୍ଯ୍ୟ କହିଲେ, "ଇଏ ଗୋଟିଏ କଥା । ଠିକ୍ ଅଛି, ମୁଁ ଗୋଟିଏ ବଡ଼ ଘର ତିଆରି କରିଦେବି, ଯେମିତି କି ତୁମ ସାଙ୍ଗମାନେ ଆସିଲେ ଆମ ଘରେ ଆରାମରେ ବସିପାରିବେ । ସେମାନଙ୍କର ଆଉ କିଛି ଅସୁବିଧା ହେବନାହିଁ ।" ଏହା ପରେ ସୂର୍ଯ୍ୟ ଗୋଟିଏ ବଡ଼ ଘର କଲେ । ତା'ପରେ ଆସିଲେ ଜଳଙ୍କ ପାଖକୁ । ତାଙ୍କ ଘରକୁ ଯିବା ପାଇଁ ସେ ଜଳଙ୍କୁ ନିମନ୍ତ୍ରଣ କଲେ । ଜଳ ସୂର୍ଯ୍ୟଙ୍କର ନିମନ୍ତ୍ରଣ ରକ୍ଷା କଲେ । କେଉଁଦିନ ଯାଇ ପହଞ୍ଚିବେ, ସେଇ କଥା ବି ସୂର୍ଯ୍ୟଙ୍କୁ ସଙ୍ଗେ ସଙ୍ଗେ କହିଦେଲେ ।

ଜଳଙ୍କର ସାଙ୍ଗମାନେ ହେଲେ ମାଛ, କୋଚିଆ, ଗେଣ୍ଡା, ବେଙ୍ଗ ଓ ଆହୁରି ଅନେକ ଜଳଚର ଜୀବ । ଜଳ ସେମାନଙ୍କୁ ଧରି ବାହାରିଲେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଘରକୁ । ଘର ପାଖରେ ପହଞ୍ଚି ସୂର୍ଯ୍ୟଙ୍କୁ ଡାକ ଛାଡ଼ି କହିଲେ, "ମୁଁ ଏବେ ଆସିଗଲି । ଆପଣ ଅନୁମତି ଦେଲେ ମୋର ସାଙ୍ଗ ସାଥୀମାନଙ୍କୁ ଧରି ଘର ଭିତରକୁ ପଶିବି ।"

ସୂର୍ଯ୍ୟ ବଡ଼ ଖୁସିରେ ହସି ହସି କହିଲେ, "ଆରେ ହଁ ହଁ ଆସ ଆସ, ଏଥିରେ ଭାବିବାର କ'ଣ ଅଛି ? ତୁମେ ଶୀଘ୍ର ତୁମ ବନ୍ଧୁମାନଙ୍କ ସହ ଆମ ଘର ଭିତରକୁ ପ୍ରବେଶ କର ।" ସୂର୍ଯ୍ୟଙ୍କ କଥାରେ ଜଳ ସୂର୍ଯ୍ୟଙ୍କ ଘର ଭିତରକୁ ପଶିଲେ । ହେଲେ ଏ କ'ଣ ? ଜଳ ପଶୁ ପଶୁ ସାଙ୍ଗେ ସାଙ୍ଗେ ଘର ଭିତରେ ଆଣ୍ଠୁଏ ପାଣି ହୋଇଗଲା । ଆରେ ପୁଣି ଏ କ'ଣ ? ଚାହୁଁ ଚାହୁଁ ସୂର୍ଯ୍ୟ ଚନ୍ଦ୍ରଙ୍କର ବେକଯାଏଁ ପାଣି ଲାଗିଗଲା । ମାଛ, ବେଙ୍ଗ ଆଦି

ଅନ୍ୟ ଜଳଚର ପ୍ରାଣୀମାନେ ବି ଜଳଙ୍କ ସହ ଉଠିଗଲେ। ପାଣି ହାଉ ହାଉ ହୋଇ ବଢ଼ିବାରେ ଲାଗିଲା। ଫଳରେ ସୂର୍ଯ୍ୟ ଚନ୍ଦ୍ର ଦ୍ରୁତ ଗତିରେ ଉପରକୁ ଗତି କରିବାରେ ଲାଗିଲେ। ହେଲେ ଜଳ କି ଛାଡ଼ିବାର ଲୋକ ? ସାଙ୍ଗେ ସାଙ୍ଗେ ଛାତ ଉପରକୁ ମାଡ଼ି ଚାଲିଲେ। ତାଙ୍କ ସହ ତାଙ୍କ ଜଳଚର ବନ୍ଧୁମାନେ ବି ମାଡ଼ି ଚାଲିଲେ।

ଜଳ ଛାତ ଉପରକୁ ମାଡ଼ି ଆସିବାରୁ ସୂର୍ଯ୍ୟ ଚନ୍ଦ୍ର ନିରୁପାୟ ହୋଇଗଲେ। କ'ଣ କରିବେ, କ'ଣ କରିବେ କିଛି ଭାବି ପାରିଲେ ନାହିଁ। ହଠାତ୍ ସୂର୍ଯ୍ୟ ଚନ୍ଦ୍ରଙ୍କ ମୁଣ୍ଡରେ ଗୋଟିଏ ବୁଦ୍ଧି ଢୁକିଗଲା। ସେମାନେ ଦେଖୁ ଦେଖୁ ସର୍‌କରି ଆକାଶକୁ ଉଠିଗଲେ। ଜଳ ଆଉ ଏତେ ବାଟ ଉଠିପାରିଲେ ନାହିଁ। ସେହିଦିନଠାରୁ ଜଳ ତଳେ ଥାଇ ସୂର୍ଯ୍ୟ-ଚନ୍ଦ୍ରଙ୍କୁ ଚାହିଁ ରହିଛନ୍ତି। ଆଉ ସେହି ଦିନଠାରୁ ସୂର୍ଯ୍ୟ-ଚନ୍ଦ୍ର ଆକାଶରେ ଯାଇ ରହିଛନ୍ତି।

(ଆଫ୍ରିକୀୟ ଲୋକକଥା)

*ସାଇଦିଗ୍‌ବଳୟ, ଇ-୧୯୨, ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ, ଭୁବନେଶ୍ୱର- ୭୫୧୦୦୩*

**❋ ହୃଦୟର ନିର୍ମଳତା ହିଁ ଅସଲ। ବାହ୍ୟ ଚେହେରାର କିଛି କାମ ନ ଥାଏ। ଯେପରି ଯେଉଁ ହାତ ପରକୁ ସାହାଯ୍ୟ କରେ, ସେ ହିଁ ଅସଲ। ଯେଉଁ ହାତ କେବଳ ପ୍ରାର୍ଥନା କରୁଥାଏ, ସେଥିରେ କିଛି ଲାଭ ନାହିଁ।**

**❋ ସବୁ ସୁନ୍ଦର ଜିନିଷ ଭଲ ହୋଇ ନ ପାରେ, କିନ୍ତୁ ପ୍ରତ୍ୟେକ ଭଲ ଜିନିଷ ସୁନ୍ଦର।**



## କ୍ରୀଡ଼ା କୁଇଜ

ଶ୍ରୀ ସତ୍ୟନାରାୟଣ ମହାପାତ୍ର

୧। ଏଚ୍.ଆଇ.ଏଲ୍.ର ପୂର୍ଣ୍ଣରୂପ କ'ଣ ?

୨। ପ୍ରଥମ ହକି ଇଣ୍ଡିଆ ଲିଗ୍ ଚମ୍ପିଆନ୍ କିଏ ହେଲା?

୩। ୨୦୧୩ରେ 'ପଦ୍ମଭୂଷଣ' ପୁରସ୍କାର ପାଇଥିବା ଦୁଇ ଖେଳାଳିଙ୍କ ନାମ କ'ଣ ?

୪। ଓଡ଼ିଶାର ପ୍ରଥମ ଆନ୍ତର୍ଜାତିକ ମହିଳା ରଗ୍‌ବୀ ଖେଳାଳିଙ୍କ ନାମ କ'ଣ ?

୫। ୨୦୧୨ ଲଣ୍ଡନ ଅଲମ୍ପିକସ୍‌ରେ ଗୀତା ପୋଘଟ କେଉଁ ଖେଳ ପାଇଁ ମନୋନୀତ ହୋଇଥିଲେ ?

୬। ବିଜେନ୍ଦ୍ର ସିଂ କେଉଁ ଖେଳ ପାଇଁ ପ୍ରସିଦ୍ଧ ?

୭। ସୁବ୍ରତ କପ୍ କେଉଁ ଖେଳ ପାଇଁ ଦିଆଯାଏ ?

୮। ଆନ୍ତର୍ଜାତିକ ଅଲମ୍ପିକ୍‌ର ହେଡ୍‌କ୍ୱାର୍ଟର କେଉଁଠି ?

୯। ମର୍ଡେକା କପ୍ କେଉଁ ଖେଳରେ ଦିଆଯାଏ ?

୧୦। ୨୦୧୧ ୱାର୍ଲଡ୍ କପ୍ କ୍ରିକେଟ୍‌ରେ କିଏ ସବୁଠାରୁ ଅଧିକ ରନ୍ ସଂଗ୍ରହ କରିଥିଲେ ?

୧୧। ପୃଥିବୀର ସବୁଠାରୁ ଅଧିକ ଟଙ୍କା ପାଉଥିବା ଫୁଟବଲ ଖେଳାଳି କିଏ ?

*ତଳତେଲେଙ୍ଗା ବଜାର, କଟକ- ୯*

(ଉତ୍ତର ୪୨ ପୃଷ୍ଠାରେ)



# କରଞ୍ଜ

ଶ୍ରୀ ଶମ୍ଭୁନାଥ ଦାସ

କରଞ୍ଜ କାଠିରେ ଦାନ୍ତକୁ ମାଜିଲେ
ଦାନ୍ତ ରହେ ସଦା ଶକ୍ତ
ପାନ କି ଖଇନି କିଛି ନ ଖାଇଲେ
ଚିକ୍ ଚିକ୍ କରେ ଦାନ୍ତ ।

କରଞ୍ଜ ତେଲ ତ ବହୁ ଉପକାରୀ
ଦୀପ ଜଳେ ଘିଅ ପରି
ଗୋଡ଼-ହାତ ଗଣ୍ଠି ଦରଜ ମାରଇ
ଗୁଣ ତା'ର ଅସୁମାରି ।

ଗୋରୁଙ୍କ ଶିଙ୍ଗରେ ଏ ତେଲ ଘଷିଲେ
ଶିଙ୍ଗ ରହେ ମଜଭୁତ
ପିତା ଗୁଣ ଯୋଗୁ ଏ ଗଛ ପତର
ବାୟୁକୁ କରେ ମାର୍ଜିତ ।

ସବୁଠାରୁ ଭଲ ଜାଳେଣି କାଠ ତ
କରଞ୍ଜ ଗଛରେ ଭାଇ
ବାରି ବଗିଚାରେ ଏପରି ଗଛକୁ
ନଷ୍ଟ-ଭ୍ରଷ୍ଟ କର ନାହିଁ ।

*୧୨/୧, ମୟୂରଭଞ୍ଜ ରୋଡ୍, କୋଲକାତା- ୭୦୦୧୨୩*

# ହସକଥା



**ସ୍ତ୍ରୀ-** ମୁଁ ଯଦି ଚାଲିଯିବି, ତୁମେ କ'ଣ କରିବ?

**ସ୍ୱାମୀ-** ସଂଗେସଂଗେ ମୁଁ ଖବର କାଗଜରେ ତୁମ ନିଖୋଜ ହେବା ଖବର ବାହାର କରିବି ।

**ସ୍ତ୍ରୀ-** ମନେମନେ ଖୁସି ହୋଇ କହିଲେ-- କଅଣ ଲେଖିବ ଖବର କାଗଜରେ ?

**ସ୍ୱାମୀ-** ତୁମେ ଯେଉଁଠି ଅଛ, ଭଲରେ ଥାଅ ।

ଊଊଊଊଊଊ

**ପୁଅ-** ବାପା ! କାଲି ମୁଁ ରାତି ୧୨ଟା ଯାଏଁ ପଢୁଥିଲି ।

**ବାପା-** ମିଛ କହୁଛୁ, ସାଢ଼େ ଦଶଟାରୁ ତ ଦୁଇଘଣ୍ଟା ଆଲୁଅ ବନ୍ଦ ଥିଲା ।

**ପୁଅ-** ହେଇଥିବ, ମୁଁ ଅଙ୍କ କଷୁଥିଲି ନାଁ ଜାଣି ପାରିନାହିଁ ।

ଊଊଊଊଊଊ

ଗୃହ ଶିକ୍ଷକ ସୁରିଆକୁ କହିଲେ,"ସବୁଦିନ ଯଦି ଏମିତି ରାବିଡ଼ି ଖାଇବାକୁ ଦିଅନ୍ତୁ, ତେବେ ପରୀକ୍ଷାରେ ଭଲ ନମ୍ବର ପାଆନ୍ତୁ ।"

**ସୁରିଆ-** ସବୁଦିନ କ'ଣ ବିରାଡ଼ି ଆମ ରାବିଡ଼ିରେ ମୁହଁ ମାରିଦେଉଛି କି ?

ଊଊଊଊଊଊ

**ରୋଗୀ (ଡାକ୍ତରଙ୍କୁ ଚାହିଁ)-** ମୁଁ ଏ ଜନ୍ମରେ ଆପଣଙ୍କ ଋଣ କିପରି ସୁଝିବି ସାର୍ ?

**ଡାକ୍ତର-** ଚେକ୍ କିମ୍ବା ଟଙ୍କା ଆକାରରେ ।





## ✤✤ ଏଥିରେ ଅସୁବିଧା କେଉଁଠି ?

ଆଚାର୍ଯ୍ୟ ବିନୋବା ଭାବେ ପ୍ରତିଦିନ କାନ୍ଧରେ ଫାଉଡ଼ା ଧରି 'ପବନାର' ଆଶ୍ରମରୁ ପ୍ରାୟ ତିନି ମାଇଲ ଦୂର ସୁରଗାଓଁ ଯାଉଥିଲେ । ତାଙ୍କୁ ପ୍ରତିଦିନ ଫାଉଡ଼ା ଧରି ଯାଇ ପୁଣି ଫାଉଡ଼ା ଧରି ଆସିବାର ଦେଖି କମଲ ନୟନ ବଜାଜ ପ୍ରଶ୍ନ କଲେ, "ଆପଣ ପ୍ରତିଦିନ ଫାଉଡ଼ା ଧରି ସେଇ ଗାଁକୁ ଯାଉଛନ୍ତି, ପୁଣି ସନ୍ଧ୍ୟାରେ ସେଇ ଫାଉଡ଼ା ଧରି ଫେରୁଛନ୍ତି । ସେଇ ଗାଁରେ କାହା ଘରେ ଫାଉଡ଼ାଟିକୁ ରଖିଦେଇ ଆସୁନାହାନ୍ତି କାହିଁକି ?"

"ସୈନିକଟିଏ ତା'ସହିତ ବନ୍ଧୁକ ନେଇଥାଏ । ଝାଡୁଦାର ସଫେଇ ପାଇଁ ସାଙ୍ଗରେ ଝାଡୁଟିଏ ଧରି ଯାଇଥାଏ । ଅନ୍ୟମାନେ ମଧ୍ୟ ନିଜ ନିଜର ଆବଶ୍ୟକ ଉପକରଣ ସାଙ୍ଗରେ ଧରି ଯାଇଥାଆନ୍ତି । ସେ କ୍ଷେତ୍ରରେ ମୁଁ ଫାଉଡ଼ା ଧରି ଯା'ଆସ କରିବାରେ ଅସୁବିଧା କ'ଣ ?" ହସି ହସି ଉତ୍ତରଦେଲେ ଆଚାର୍ଯ୍ୟ ବିନୋବା ଭାବେ ।



## ✤✤ ଜନତାର ନେତା



ରୁଷ୍ ଦେଶର ଜନପ୍ରିୟ ନେତା ଲେନିନ୍ ଥରେ ଶତ୍ରୁମାନଙ୍କ ଘାତକ ଆକ୍ରମଣ ଯୋଗୁଁ ଶଯ୍ୟାଶାୟୀ ହୋଇଥାଆନ୍ତି । ଏ ସମୟରେ ଖବର ପହଞ୍ଚିଲା ଯେ ଦେଶର ଏକ ମହତ୍ତ୍ୱପୂର୍ଣ୍ଣ ରେଳରାସ୍ତା ଭାଙ୍ଗି ଯାଇଛି । ଖବର ପାଇ ଅସୁସ୍ଥତା ସତ୍ତ୍ୱେ ଲେନିନ୍ ସେଠାରେ ପହଞ୍ଚିଲେ । ପହଞ୍ଚିବା ସଙ୍ଗେ ସଙ୍ଗେ କାମରେ ଲାଗିଗଲେ । ଅଳ୍ପ ସମୟ ମଧ୍ୟରେ ସମସ୍ତଙ୍କର ସହଯୋଗରେ କାମଟି ସରିଗଲା । ଏତେ ବଡ଼ ଜଣେ ନେତାଙ୍କୁ ସାଧାରଣ ଶ୍ରମିକଙ୍କ ସହ ମିଶି କଠିନ ପରିଶ୍ରମ କରୁଥିବାର ଦେଖି ଜଣେ ନେତୃସ୍ଥାନୀୟ ବ୍ୟକ୍ତି କହିଲେ, "ଆପଣଙ୍କ ସ୍ୱାସ୍ଥ୍ୟ ଭଲ ନାହିଁ । ପୁଣି ସାଧାରଣ ଶ୍ରମିକଙ୍କ ସହ ମିଶି କଠିନ କାର୍ଯ୍ୟ କରୁଛନ୍ତି । ଏ ସମୟରେ ଆପଣଙ୍କର ବିଶ୍ରାମ ନେବା ଉଚିତ ହୋଇଥାଆନ୍ତା ।"

"କିନ୍ତୁ ଯେଉଁ ନେତା ଏହି ସାମାନ୍ୟ କାମ କରି ନ ପାରେ, ସିଏ କେମିତି ଜନନେତା ହୋଇପାରିବ?" ହସି ହସି କହିଲେ ଲେନିନ୍ ।

**ଶ୍ରୀ ସୁରେଶ କୁମାର ପଣ୍ଡା,** *ଗୁମୁଡ଼ା, ବି.ସିଂହପୁର, କୋରାପୁଟ- ୭୬୪୦୫୭*

## ✤✤ ଗୋରା କର୍ଣ୍ଣେଲ୍ କଳା ମଣିଷକୁ କ୍ଷମା ମାଗିଲେ

ଆମର ଅନ୍ୟତମ ଜାତୀୟ ସଂଗୀତ "ବନ୍ଦେ ମାତରଂ" ଓ ଉପନ୍ୟାସ "ଆନନ୍ଦ ମଠ"ର ରଚୟିତା

ବଙ୍କିମ ଚନ୍ଦ୍ର ଚାଟାର୍ଜି ଇଂରେଜ ସରକାରଙ୍କ ଅଧୀନରେ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ଭାବେ କାର୍ଯ୍ୟ କରୁଥିଲେ। ଯେତେ ଉଚ୍ଚ ପଦରେ ଥିଲେ ବି ଗୋରା ସରକାରଙ୍କ ଅମଳରେ ଇଂରେଜ କର୍ମଚାରୀଗଣ ଏସୀୟ ଲୋକଙ୍କୁ 'କଳାଲୋକ' ବୋଲି ହେୟ ଓ ଘୃଣ୍ୟ ମନେକରୁଥିଲେ। ଇଂରେଜ ବସ୍ତି ଦେଇ କୌଣସି କଳାଲୋକ ଯାନ-ବାହନରେ ଚଢ଼ି ଯାଇ ପାରୁ ନ ଥିଲେ। ସରକାର ତ ଗୋରାମାନଙ୍କର, ସବୁକିଛି ସେମାନଙ୍କର ମର୍ଜି ଉପରେ ଚାଲୁଥିଲା। ଥରେ ବଙ୍କିମଚନ୍ଦ୍ର ଇଂରେଜ ସେନାଛାଉଣି ପାଖ ଦେଇ ପାଲିଙ୍କିରେ ଯାଉଥିଲେ। ସେଇ ସେନାଛାଉଣିର କର୍ଣ୍ଣେଲ୍ ମିଃ ଡଫିନ୍ ଅତ୍ୟନ୍ତ ଅସହିଷ୍ଣୁ ଥିଲେ। ସେ ପାଲିଙ୍କିରେ ନ ଯାଇ ପାଦରେ ଚାଲି ଚାଲି ଯିବାକୁ ବଙ୍କିମଚନ୍ଦ୍ରଙ୍କୁ ଧମକ ଦେଲେ। ବଙ୍କିମଚନ୍ଦ୍ର ନ ମାନିବାର ତାଙ୍କୁ ଧସ୍ତାଧସ୍ତି କଲେ। ଏଭଳି ଅନ୍ୟାୟ ହେଲେ ଅନ୍ୟ ଭାରତୀୟ କର୍ମଚାରୀ ପ୍ରାୟଶଃ ନୀରବରେ ସହିଯାଉଥିଲେ। ମାତ୍ର ସ୍ୱାଭିମାନୀ ବଙ୍କିମଚନ୍ଦ୍ର ଫଳ ଯାହା ହେଉ ନା କାହିଁକି, କର୍ଣ୍ଣେଲ୍ ଡଫିନ୍‌ଙ୍କ ନାମରେ ଜଜ୍‌କୋର୍ଟରେ କେଶ୍ ରୁଜୁ କରିଦେଲେ।

ଜଣେ ଭାରତୀୟ କର୍ମଚାରୀ ଇଂରେଜ କର୍ଣ୍ଣେଲ୍‌ଙ୍କ ନାମରେ କେଶ୍ କରିବାର ସାହସ ଦେଖି ଭାରତୀୟମାନଙ୍କର ସାହସ ବଢ଼ିଗଲା। ତେଣୁ ସବୁ ଓକିଲ ମିଶି ଏହି କେଶ୍‌ରେ-- ମିଃ ଡଫିନ୍‌ଙ୍କ ପାଇଁ କେହି ଲଢ଼ିବେ ନାହିଁ ବୋଲି ସ୍ଥିର କଲେ। ମିଃ ଡଫିନ୍ କୋର୍ଟ ନୋଟିସ୍ ପାଇଲେ, କିନ୍ତୁ ତାଙ୍କ ସପକ୍ଷରେ ଲଢ଼ିବାକୁ କୌଣସି ଗୋଟିଏ ଓକିଲ ପାଇଲେ ନାହିଁ। ତେଣୁ ସେ ଜଜ୍ ଥିବା ନିଜ ଜାତିଭାଇ ଗୋରା ମାଜିଷ୍ଟ୍ରେଟ୍‌ଙ୍କୁ ଭେଟି କିନାରା କରିବାକୁ ଅନୁରୋଧ କଲେ। ଗୋରା ଜଜ୍‌ଜଣଙ୍କ ନ୍ୟାୟପ୍ରିୟ ଥିଲେ ଓ ଓକିଲ ସଂଘବଦ୍ଧତା ତାଙ୍କୁ ଆଲୋଡ଼ିତ କଲା। ସୁତରାଂ କୌଣସି ପକ୍ଷପାତ ନ କରି ଖୋଲା ଅଦାଲତରେ ବଙ୍କିମବାବୁଙ୍କୁ କ୍ଷମା ପ୍ରାର୍ଥନା କରିବାକୁ ସେ ଡଫିନ୍‌ଙ୍କୁ କହିଲେ। ଗୋରା କର୍ଣ୍ଣେଲ୍ କଳା ମଣିଷକୁ କ୍ଷମା ମାଗିବାକୁ ବାଧ୍ୟ ହେଲେ।

ଏହି ଘଟଣା ପରେ ପରେ ବଙ୍କିମଚନ୍ଦ୍ରଙ୍କ ମନରେ ଦେଶପ୍ରୀତି, ସଂଘୀୟ ଶକ୍ତି ଓ ଅତ୍ୟାଚାରୀ ସହ ଲଢ଼ିବା ମନୋଭାବ ତାଙ୍କ କାଳଜୟୀ ଉପନ୍ୟାସ 'ଆନନ୍ଦମଠ' ସୃଷ୍ଟି କରିବାରେ ଅନୁପ୍ରେରିତ କରିଥିଲା।

--**ଶ୍ରୀ ନାମଯଜ୍ଞ ମିଶ୍ର**, *ବରପାଲିପଡ଼ା, ବଲାଙ୍ଗୀର*

---

ଜାଣନ୍ତି କି, ନିଉଜିଲ୍ୟାଣ୍ଡ୍‌ରେ ସେ ଦେଶର ଲୋକସଂଖ୍ୟା (୪ କୋଟି) ଠାରୁ ମେଣ୍ଢାମାନଙ୍କ ସଂଖ୍ୟା (୭ କୋଟି) ଯଥେଷ୍ଟ ଅଧିକ । ମେଷପାଳନ ସେମାନଙ୍କର ପ୍ରଧାନ ଜୀବିକା ଅର୍ଜନର ପନ୍ଥା । ସେଠାରୁ ବହୁ ପରିମାଣରେ ମାଂସ ଓ ପଶମ ବିଦେଶକୁ ରପ୍ତାନି କରାଯାଇଥାଏ ।



# ଅପହଞ୍ଚ ଟିମ୍ବୁକ୍‌ଟୁର କାହାଣୀ

ଡାଃ ମହାପାତ୍ର ଆନନ୍ଦଶଙ୍କର ମିଶ୍ର

'ସାହାରା', ଯାହାର ନାଁ ଧରିବାମାତ୍ରେ ଆଖି ଆଗରେ ଭାସିଉଠେ ଧୁ ଧୁ ବାଲିଭର୍ତ୍ତି ଭୂଇଁ; ଯାହାର କୌଣସି ଆରମ୍ଭ ଓ ଶେଷ ନାହିଁ। ଉତ୍ତର ଆଫ୍ରିକୀୟ ଦେଶ ମାଲି, ନାଇଜର, ଆଲଜେରିଆ ପ୍ରଭୃତି ଦେଶ ଏହି ସାହାରା ପାଖରେ ଅଛନ୍ତି। ଆଉ ଏଇଠି ଦକ୍ଷିଣ ପାଖକୁ ରହିଛି ଟୁମ୍ବକ୍‌ଟୁ ନଗରୀ, ଯାହା ପୃଥିବୀର ସୁଦୂରତମ ଅପହଞ୍ଚ ନଗରୀମାନଙ୍କ ମଧ୍ୟରେ ଅନ୍ୟତମ। ଏଇ ଟିମ୍ବକ୍‌ଟୁ ନଗରୀ ନାମ ଶୁଣି ଶତାବ୍ଦୀ ଶତାବ୍ଦୀ ଧରି ଅଭିଯାତ୍ରୀମାନେ ରୋମାଞ୍ଚିତ ହୋଇ ଆସିଛନ୍ତି। ୧୮୨୬ ମସିହାରେ ୟୁରୋପରୁ ପ୍ରଥମେ ହାଡିସ୍କଟ ଓ ଗର୍ଡନଲେଙ୍ଗ ଏଇ ଟିମ୍ବକ୍‌ଟୁ ଅଭିଯାନରେ ଆସିଥିଲେ ଏବଂ ଲେଙ୍ଗଙ୍କୁ ଏଠାକାର ଦୁର୍ଦ୍ଧର୍ଷ ତୁଆରେଗମାନେ ହତ୍ୟା କରିଥିଲେ।

ମାଳିର ବିଖ୍ୟାତ 'ଏରାଉଏନ୍' ମରୁଦ୍ୟାନରେ ପହଞ୍ଚିବା ପାଇଁ ଅଭିଯାତ୍ରୀମାନଙ୍କୁ ଓଟ ପିଠିରେ ଅସହ୍ୟ ସୂର୍ଯ୍ୟକିରଣ ସହ୍ୟ କରି ଯିବାକୁ ପଡ଼େ। ଏଥିପାଇଁ ୨୪ ଘଣ୍ଟା ସମୟ ଲାଗେ। ସେଠି ବିଶ୍ରାମ ନେବା ପରେ ଅଭିଯାତ୍ରୀମାନଙ୍କର ଅସଲ ଅଭିଯାନ ଆରମ୍ଭ ହୁଏ-- ମରୁଭୂମି ମଧ୍ୟରେ ଏକାଦିକ୍ରମେ ସାତଦିନ କାଳ ଓଟ ପିଠିରେ ଯାତ୍ରା କରି ୨୮୦ କିଲୋମିଟର ଦୂରତା ଅତିକ୍ରମ କରିବା ପରେ ପଡ଼େ 'ଟିମ୍ବକ୍‌ଟୁ'-- ଅଭିଯାତ୍ରୀମାନଙ୍କ ସ୍ୱପ୍ନର ମରୁନଗରୀ।

ଏହି ଅଞ୍ଚଳର ଦୁର୍ଦ୍ଧର୍ଷ ତୁଆରେଗ (Tuareg) ଜାତିର ଲୋକଙ୍କର ବହୁ ଦୁଃସାହସିକ ଅଭିଯାନ ସମ୍ପର୍କରେ ବହୁ ଚଳଚ୍ଚିତ୍ର ଓ ପୁସ୍ତକରେ ଲୋମହର୍ଷଣକାରୀ ବର୍ଣ୍ଣନା ରହିଛି। ଏଣୁ ସ୍ୱଚକ୍ଷୁରେ ଏ ଅଞ୍ଚଳ ତଥା ତୁଆରେଗମାନଙ୍କୁ ଦେଖିବା ପାଇଁ ଅଭିଯାତ୍ରୀମାନେ ଏତେ କଷ୍ଟ ସହି ଏଠାକୁ ଆସନ୍ତି।

ଏହି ତୁଆରେଗମାନଙ୍କୁ 'ମରୁଭୂମିର ନୀଳମଣିଷ' ମଧ୍ୟ କୁହାଯାଏ। କାରଣ ଏମାନେ ଗାଢ଼ ନୀଳରଙ୍ଗର ପୋଷାକ ପିନ୍ଧିଥାନ୍ତି ତଥା ଗାଢ଼ ନୀଳ ରଙ୍ଗରେ ମଧ୍ୟ ଦେହକୁ ଚିତ୍ରିତ କରିଥାନ୍ତି। ଏମାନେ ମାଲି, ନାଇଜର, ଆଲଜେରିଆ ପ୍ରଭୃତି ଦେଶରେ ଯାଯାବର ଭଳି ଘୂରି ବୁଲନ୍ତି। ଏମାନେ ମୁସଲିମ୍ ଧର୍ମାବଲମ୍ବୀ। ପ୍ରାୟ ତିନି ଲକ୍ଷ ତୁଆରେଗ ଏହି ଆଫ୍ରିକୀୟ ଅଞ୍ଚଳରେ ଅଛନ୍ତି ବୋଲି



ହିସାବ କରାଯାଇଛି । ସେମାନଙ୍କ ଆଞ୍ଚଳିକ ଭାଷା ହେଉଛି 'ତାମସେକ' । ଏମାନେ ପାଞ୍ଚମିଟର ଲମ୍ବର ପୋଷାକରେ ମୁଣ୍ଡରୁ ପାଦ ଯାଏଁ ଘୋଡ଼ାଇ ହୋଇଥାନ୍ତି । କେବଳ ଯାହା ଆଖି ଓ ହାତପାପୁଲି ଖୋଲାଥାଏ ।

ସବୁଠୁ ମଜା କଥା ତୁଆରେଗ୍ ମହିଳାମାନେ ମୁଖମଣ୍ଡଳ ଘୋଡ଼ାଇ ନ ଥିଲେ ମଧ୍ୟ ନବଯୁବକମାନେ ଓଢ଼ଣାରେ ମୁହଁ ଘୋଡ଼ାଇଥାନ୍ତି । ଏହା ଫଳରେ ଦୁଷ୍ଟ ଆତ୍ମାର ଦୃଷ୍ଟିରୁ ରକ୍ଷା ମିଳେ ବୋଲି ମନେକରାଯାଏ । ତା'ଛଡ଼ା ଯୁବକମାନେ ଓଢ଼ଣାରେ ମୁହଁ ଘୋଡ଼ାଇଲେ, ସେମାନଙ୍କର ଏହା ଉତ୍ତମ ଆଚରଣ ବୋଲି ପ୍ରଶଂସା କରାଯାଏ । ଏପରି ନ କଲେ ଯୁବକମାନଙ୍କୁ ସ୍ତ୍ରୀ ଗ୍ରହଣ କରିବାକୁ ସୁଯୋଗ ଦିଆଯାଏ ନାହିଁ । ମୁହଁ ଘୋଡ଼ାଇଥିବା ଯୁବକମାନଙ୍କୁ 'ଓଟସବାରୀ' ଲୋକଙ୍କ ଦଳପତି କରାଯାଏ । ସୀମାହୀନ ମରୁଭୂମି ମଧ୍ୟରେ ଆକାଶର ତାରାମାନଙ୍କୁ ଦେଖି ତୁଆରେଗମାନେ ବାଟ ଚାଲନ୍ତି । ସତେ ଯେପରି ଆକାଶ ଦେହରେ ଏ ଅଞ୍ଚଳର ରାସ୍ତାର ନକ୍ସା ଅଙ୍କା ହୋଇଥାଏ !

ମାଲିର ତାଓଦେନ୍ନିରେ ଲୁଣ ପଥର ଖଣି ହଜାର ବର୍ଷ ପୂର୍ବରୁ ରହିଛି । ବର୍ଷର ଥଣ୍ଡା ମାସରେ ଅର୍ଥାତ୍ ଅକ୍ଟୋବରରୁ ମାର୍ଚ୍ଚ ମଧ୍ୟରେ ପ୍ରାୟ ୨୦୦୦ ଅଣ୍ଡିରା ଓଟଙ୍କ ପିଠିରେ ଏଠାରୁ ଲୁଣପଥର ଟିମ୍ବୁକ୍ଟୁକୁ ନିଆଯାଏ । ତାଓଦେନ୍ନିରୁ ଟିମ୍ବକ୍ଟୁର ଦୂରତା ପ୍ରାୟ ୫୦୦୦ କିଲୋମିଟର । ପ୍ରତିଦିନ ଏହି ଓଟଦଳଙ୍କୁ ପ୍ରାୟ ୬୦ କିଲୋମିଟର ଯିବାକୁ ପଡ଼େ । ଟିମ୍ବୁକ୍ଟୁଠାରୁ ଦଶକିଲୋମିଟର ଦକ୍ଷିଣକୁ 'ନାଇଜେର' ନଈ ଆରବ ଅଞ୍ଚଳ ଓ ଆଫ୍ରିକା ମଧ୍ୟରେ ବାଣିଜ୍ୟ କାରବାରର ସୁବିଧା କରିଦେଇଛି ।

ଏବେ ଟିମ୍ବୁକ୍ଟୁରେ ପଚାଶ ହଜାରରୁ ଅଧିକ ଲୋକ ବାସ କରୁଛନ୍ତି । ଏମାନଙ୍କ ମଧ୍ୟରୁ ଶତକଡ଼ା ଷାଠିଏ ଭାଗ ହେଉଛନ୍ତି ତୁଆରେଗ । ପ୍ରାଚୀନ କାଳରୁ ରହିଥିବା ଦୁଇ ମହଲା ବିଶିଷ୍ଟ ମାଟିଘର ସବୁ ଏବେ ବି ବହୁ ସଂଖ୍ୟାରେ ଏଠାରେ ରହିଛି । ଚତୁର୍ଦ୍ଦଶ ଶତାବ୍ଦୀର ଏକ ମାଟି ତିଆରି ମସଜିଦକୁ ଏବେ ବି ତୁଆରେଗ୍‌ମାନେ ନମାଜ କରିବା ପାଇଁ ଯା'ନ୍ତି ।

ଏହି ମସଜିଦକୁ ୟୁନେସ୍କୋ ତରଫରୁ 'ୱାର୍ଲ୍ଡ ହେରିଟେଜ୍' ରୂପେ ସ୍ୱୀକୃତି ମିଳିଛି ।

*ବୈରାମ ନଗର ଛକ, ବାଲେଶ୍ୱର- ୩* ❧❧



ତତ୍‌କାଳୀନ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ୰ ମାନନୀୟ କେ. କେ. କାମରାଜ ଏକମାତ୍ର ମୁଖ୍ୟମନ୍ତ୍ରୀ, ଯେ କି ସରକାରୀ ବାସଭବନରେ ନ ରହି ଏକ ଭଡ଼ାଘରେ ରହୁଥିଲେ । ସେ ଶିକ୍ଷାକୁ ସର୍ବାପେକ୍ଷା ଅଧିକ ଗୁରୁତ୍ୱ ଦେଇ ମୋଟ ବାର୍ଷିକ ଆୟର ଶତକଡ଼ା ୨୦ ଭାଗ କେବଳ ଶିକ୍ଷାରେ ଖର୍ଚ୍ଚ କରି ସ୍କୁଲ ଛାତ୍ରଛାତ୍ରୀଙ୍କ ନିମନ୍ତେ ମଧ୍ୟାହ୍ନ ଭୋଜନ ତଥା ୟୁନିଫର୍ମ (ଏକବିଧ ପୋଷାକ) ପ୍ରବର୍ତ୍ତନ କରିଥିଲେ । ତାଙ୍କର ଜୀବନ ଥିଲା ଅତ୍ୟନ୍ତ ସରଳ, ନିରାଡ଼ମ୍ବର । ପରେ ସେ ଜାତୀୟ କଂଗ୍ରେସର ସଭାପତି ପଦବୀରେ ଅଧିଷ୍ଠିତ ହୋଇଥିଲେ । ମୃତ୍ୟୁପରେ ତାଙ୍କର କେବଳ ଖଣ୍ଡିଏ ଖଦଡ଼ ଧୋତି, ଖଣ୍ଡିଏ ଖଦଡ଼ କାମିଜ୍ ଏବଂ ଶୋଉଥିବା ତକିଆ ତଳେ ମାତ୍ର ଶହେଟଙ୍କାର ଏକ ନୋଟ୍ ଥିଲା ।

**--ଶ୍ରୀ ଦେବେନ୍ଦ୍ର ନାଥ ପ୍ରଧାନ**

# କର୍ଣ୍ଣ ମଲେ ପାଞ୍ଚ, ଅର୍ଜୁନ ମଲେ ପାଞ୍ଚ

ଡକ୍ଟର ସଦାନନ୍ଦ ପରିଡ଼ା

ନିଜର ପାଞ୍ଚ ପୁଅଙ୍କୁ ଧରି କୁନ୍ତୀ ହସ୍ତିନା କଟକରେ ବହୁତ ଆନନ୍ଦରେ ଥିଲେ । ନାରଦଙ୍କୁ ତ କଳି ନ ଲଗେଇଲେ ଭଲଲାଗେନି । ସେ ଯାଇ କୁନ୍ତୀଙ୍କ ପାଖରେ ପହଞ୍ଚିଲେ । ଭଲମନ୍ଦ ପଚାରିଲେ । କୁନ୍ତୀ ତାଙ୍କୁ ପ୍ରଣାମ କରି କହିଲେ, "ମୋର ବଡ଼ପୁଅ ଯୁଧିଷ୍ଠିର ଧର୍ମପରାୟଣ, ଭୀମ ବଳବାନ୍, ଅର୍ଜୁନ ସର୍ବବିଦ୍ୟାନିପୁଣ, ନକୁଳ ପଶୁପକ୍ଷୀ ବିଶାରଦ, ସହଦେବ ଭବିଷ୍ୟତ ଜ୍ଞାତା । ସୁଗୁଣସମ୍ପନ୍ନ ପୁଅମାନଙ୍କୁ ପାଇ ମୁଁ ଖୁସି ।"

"ହେଲେ ମା' ତମର ଏଇ ପୁଅ ଭିତରୁ ଗୋଟିଏ ପୁଅକୁ ତୁମକୁ ହରେଇବାକୁ ପଡ଼ିବ ।" ନାରଦ କହିଲେ ।

"କିନ୍ତୁ କାହିଁକି?"କୁନ୍ତୀ ଅପ୍ରତିଭ ହୋଇ ପଚାରିଲେ । ନାରଦ କହିଲେ, "ଆଜି ମୁଁ ବ୍ରହ୍ମାଙ୍କ ହାତରେ ଆୟୁଷ ପୋଥିଟି ଦେଖୁଥିଲି । ସେଥିରେ ତୁମ ପୁଅମାନଙ୍କର ଭାଗ୍ୟ ଲେଖାଅଛି ଯେ ପ୍ରଥମ ଦ୍ୱାରା ଚତୁର୍ଥ ହତ । ମାନେ ଯୁଧିଷ୍ଠିରଙ୍କ ଦ୍ୱାରା ନକୁଳ ହତ ହେବ, ଏଇଆ ନାଁ?"

ଏକଥା ଶୁଣି କୁନ୍ତୀ ହଡ଼ବଡ଼େଇ ଗଲେ । ହଠାତ୍ ତାଙ୍କର ମନେପଡ଼ିଲା ଏଇ ପାଞ୍ଚଟି ପୁଅ ବ୍ୟତୀତ ତାଙ୍କର ଆଉ ଗୋଟିଏ ପୁଅ ଅଛି । ସେଇଟି ତାଙ୍କର ପ୍ରଥମ ପୁଅ । ସେ ମନର ଭାବ ଗୋପନ ରଖି ପଚାରିଲେ, "ଏ କଥାଟାକୁ ଏପଟସେପଟ କରିହେବନି ?" ନାରଦ କହିଲେ, "ହଁ, ହୋଇପାରେ, ହେଲେ ନକୁଳ ତ ମାଦ୍ରୀ ନନ୍ଦନ । ସେ ତୁମ ନିଜ ପୁଅ ନୁହେଁ, ମରିବ ଯଦି ମରୁ ।" କୁନ୍ତୀ କହିଲେ, "ଗୋସେଇଁ କଥାଟା ବାସ୍ତବରେ ସେଇୟା ନୁହେଁ । ଏମାନଙ୍କ ଛଡ଼ା ମୋର ଆଉ ଗୋଟିଏ ପୁଅ ଅଛି । ଅବିବାହିତା ବେଳେ ଦୁର୍ବାସାଙ୍କ ପ୍ରଦତ୍ତ ମାଳି ଦ୍ୱାରା ସୂର୍ଯ୍ୟଙ୍କ ଔରସରୁ ତାକୁ ଜନ୍ମ ଦେଇଥିଲି । ସିଏ ହେଲା କର୍ଣ୍ଣ । ଯଦି ଆପଣଙ୍କ କଥା ସତ ହୁଏ, ତା'ହେଲେ କର୍ଣ୍ଣ ଦ୍ୱାରା ଚତୁର୍ଥ ପୁଅ ଅର୍ଜୁନର ମୃତ୍ୟୁ ହେବ । ଏହା ଆଦୌ ସହନୀୟ ନୁହେଁ । ଆପଣ ତ ସର୍ବଜ୍ଞାତା, କୁହନ୍ତୁ ମୁଁ କ'ଣ କରିବି?"



ନାରଦ ନ ଜାଣିଲା ପରି କହିଲେ, "ଯଦି ଏପରି କଥା, ତେବେ ତୁମେ ଭୋଳାନାଥଙ୍କୁ ଦେଖାକର, ସେ କିଛି ଗୋଟିଏ ଉପାୟ କହିବେ ।" ନାରଦ ବିଦାୟ ନେଇଗଲେ । କୁନ୍ତୀ ଅବିଳମ୍ବେ ଶିବଙ୍କୁ ଦେଖାକଲେ । ଭକ୍ତିଭାବରେ ପଦବନ୍ଦନା କରି ସବୁ କଥା ବୁଝେଇ କହିଲେ । ଗଞ୍ଜେଇ ଖାଇ ଶିବଙ୍କ ଆଖି ଲାଲ୍ ପଡ଼ିଥାଏ । ସେ ତ୍ରିଶୂଳ ଭୂଇଁରେ କଚାଡ଼ି ଦେଇ କହିଲେ, "ତୁମେ ବ୍ରହ୍ମାଙ୍କୁ ଯାଇ କହିବ ଯେ ଶିବ କହିଛନ୍ତି ସେଇଟା



ଲିଭେଇଦେବେ । ଯଦି ନ ହୁଏ, ମୁଁ ମୋ ଦୁଇପୁଅଙ୍କୁ ପଠେଇବି । ସେ ଦୁହେଁ ଯାଇ ବ୍ରହ୍ମାଙ୍କୁ ବାନ୍ଧି ଆଣିବେ ।'' ଶିବଙ୍କଠାରୁ ଅଭୟ ପାଇ କୁନ୍ତୀ ବାହାରି ଯାଉଥିଲେ । ପାର୍ବତୀ କହିଲେ, ''ଶୁଣ ଶୁଣ, ତମେ ଭଗବାନ ବିଷ୍ଣୁଙ୍କୁ ଦେଖାକର, ସେ ହୁଏତ କିଛି ସହଜ ଉପାୟ ବତେଇଦେବେ ।'' ଉମାଙ୍କ କଥା କୁନ୍ତୀଙ୍କ ମନକୁ ପାଇଲା । ସେ ଯାଇ ଭଗବାନ ଶ୍ରୀକୃଷ୍ଣଙ୍କୁ ଦେଖାକଲେ । ସେ ତାଙ୍କର ପିଉସୀ । ଏଭଳି ଗୁପ୍ତ କଥାଟିଏ ଲାଜ ଲାଜ ହୋଇ ବଖାଣିଲେ । ସବୁ ଶୁଣି ଶ୍ରୀକୃଷ୍ଣ କହିଲେ, ''ତୁମେ ବ୍ରହ୍ମାଙ୍କର ବାରାସ୍ୱତୀପୁରକୁ ଯାଅ । ସବୁକଥା ବୁଝେଇ କହିବ । ମୋର ଆଶା ତୁମ କାମ ହୋଇଯିବ । ମୁଁ ପଛରେ ଶିବଙ୍କୁ ନେଇ ଯାଉଛି ।''

ଏଭଳି ଆଶ୍ୱାସନା ପାଇଁ କୁନ୍ତୀ ବ୍ରହ୍ମାଙ୍କୁ ଭେଟିଲେ । ସବୁକଥା ନମ୍ର ଭାବରେ ଜଣାଇଲେ । ପୁଅ କୋଷ୍ଠୀରୁ 'ପ୍ରଥମ ଦ୍ୱାରା ଚତୁର୍ଥ ହତ' ଲିଭେଇଦେବାକୁ କହିଲେ । ବ୍ରହ୍ମା କହିଲେ, ''ନାଁ ନାଁ ସେପରି ହୋଇ ପାରିବନି-- 'ଯଦ୍ଧାତା ନିଜ ଭାଲପଟ୍ଟ ଲିଖିତଂ କର୍ମାନୁସାରେ ଫଳମ୍' । ଅର୍ଥାତ୍ କପାଳ ଲିଖନ କେ କରିବ ଆନ । କୁନ୍ତୀ ସେଇଠି ବସି ରହିଲେ । ତାଙ୍କର ବିଳମ୍ବ ଦେଖି ଶିବ ଓ ବିଷ୍ଣୁ ଦୁହେଁ ବାରାସ୍ୱତୀପୁରରେ ପହଞ୍ଚିଲେ । ପୁଅର କୋଷ୍ଠୀ ବଦଳେଇବାକୁ ଅନୁରୋଧ କଲେ । ବ୍ରହ୍ମା ରୋକ୍‌ଠୋକ୍ ମନା କରିଦେଲେ ।

ଏ ଖବର ପାଇ ଗଣେଶ ଓ କାର୍ତ୍ତିକ ଦୁହେଁ ପ୍ରମଥଗଣଙ୍କୁ ନେଇ ବାରାସ୍ୱତୀପୁର ଅବରୋଧ କଲେ । ଗହଳଚହଳ ଶୁଣି ବ୍ରହ୍ମାଙ୍କ ଘରଣୀ ସାବିତ୍ରୀ ଡରିଗଲେ । ସେ କହିଲେ, ''ହଇ ହେ ! ମୋତେ ବଡ଼ ଡର ଲାଗୁଛି । ଯଦି ଯୁଦ୍ଧ ହେବ?'' ବ୍ରହ୍ମା କହିଲେ, ''ହେଉ, ମୁଁ କ'ଣ ସେମାନଙ୍କୁ ଡରି ଅନ୍ୟାୟ ଅନୀତି କରିବି ?''ତମେ ତାଙ୍କ ସାଥିରେ ଯୁଦ୍ଧ କରିବ ? ତମର କ'ଣ ଅଛି ? ପୁଳାଏ କୁଶ, ଗୋଟିଏ କମଣ୍ଡଳୁ ଆଉ ଖଣ୍ଡେ ଠେଙ୍ଗା (ଦଣ୍ଡ) ! ଶିବ ଓ ବିଷ୍ଣୁଙ୍କର ପୁଅମାନେ ଧନୁର୍ଦ୍ଧର । ଜଣଙ୍କ ହାତରେ ତ୍ରିଶୂଳ, ଆଉ ଜଣଙ୍କ ହାତରେ ଚକ୍ର । କଥାରେ ଅଛି-- 'ବଳବନ୍ତ ଜନ ସଙ୍ଗେ ନ କରିବ କଳି, ଅନଳେ ଲାଗିଲେ କାଷ୍ଠ ନିଜେ ଯାଏ ଜଳି ।''

''ତା'ହେଲେ କ'ଣ କରିବା ?'' ବ୍ରହ୍ମା ଡରିଯାଇ ପଚାରିଲେ ।

''ନାଇଁ ମୁଁ ଦୁଇଠାକୁରଙ୍କୁ ଡାକୁଛି । ଯେମିତି ହେବ, ସେମିତି ଗୋଟିଏ ସମାଧାନ କରିଦେବା ।'' ଏହା କହି ସେ ଶିବ-ବିଷ୍ଣୁଙ୍କ ପାଖରେ ପହଞ୍ଚିଲେ । ସେ ଦୁହେଁ ଆସିଲେ ଓ ଗୋଟାଏ ଛୋଟ ସଭା ହେଲା । ବ୍ରହ୍ମା କହିଲେ, ''କପାଳ ଲେଖାଟା ଲିଭେଇବା ନୀତିବିରୁଦ୍ଧ ।'' ବିଷ୍ଣୁ କହିଲେ, ''ତେବେ ଲେଖିଦିଅ ଚତୁର୍ଥ ଦ୍ୱାରା ପ୍ରଥମ ହତ ।'' ଶିବ କୁନ୍ତୀଙ୍କୁ ଚାହିଁ କହିଲେ, ''ତମର ଏଥର




## ପଦ୍ୟ ରଚନା

ଯେଉଁମାନେ କବିତା ଲେଖନ୍ତି, ସେମାନଙ୍କ ପାଇଁ ଏଠାରେ ଦୁଇପଦ କହୁଛୁ ।

୧) ପ୍ରଥମେ ମନେରଖ, କବିତାର ଭାଷା କୋମଳ ହେବା ଉଚିତ । ସେଥିପାଇଁ 'ଜନ୍ମଭୂମି'କୁ 'ଜନମଭୂମି', 'ସ୍ୱପ୍ନ'କୁ 'ସପନ', 'ବର୍ଷା'କୁ 'ବରଷା' କରାଯାଏ । କୌଣସି କ୍ଲିଷ୍ଟ ଶବ୍ଦ ଥିଲେ ସେଠାରେ ତା'ର କୋମଳ ପ୍ରତିଶବ୍ଦ ଦେଇ ରଚନା କର; ଯେପରି ଜଣେ ଅକବି ଲେଖିଥିବା 'ଶୁଷ୍କ କାଷ୍ଠ ତିଷ୍ଠତ୍ୟଗ୍ରେ'କୁ ଜଣେ ସଂସ୍କୃତ କବି ରୂପାନ୍ତରିତ କରି କହିଲେ, 'ନୀରସ ତରୁବର ପୁରତୋ ଭାତି' । 'ଅତିଥିଗୃହ' ସ୍ଥାନରେ 'ଅତିଥିଶାଳା' ବା 'ଅତିଥିଭବନ' ପଦ୍ୟ ପାଇଁ ଅଧିକ ଉପଯୋଗୀ ।

୨) ପଦ୍ୟର ଅନ୍ୟ ଏକ ବିଶେଷତ୍ୱ ତା'ର ଛନ୍ଦ । ଏହା ପ୍ରଧାନତଃ ଦୁଇପ୍ରକାର – ମିତ୍ରାକ୍ଷର ଓ ଅମିତ୍ରାକ୍ଷର । ଉଦାହରଣ–

ମିତ୍ରାକ୍ଷର– ନମଇ ନୃସିଂହଚରଣ
　　　　　ଅନାଦି ପରମ କାରଣ ।

ଅମିତ୍ରାକ୍ଷର–
　　ଏହି କି ସେ ଆର୍ଯ୍ୟଭୂମି, ଏ ଭୂମିର ସୁତ
　　ତୁମେ କି କି ଆର୍ଯ୍ୟନାମ ଦାୟାଦ ଜଗତେ ?

ମିତ୍ରାକ୍ଷର ଅଧିକ ପ୍ରଚଳିତ । ଏହାର ଦୁଇଟି ଶୈଳୀ ଅଛି – ଗୋଟିଏ ପାରଂପରିକ, ଅନ୍ୟଟି ମାତ୍ରାବୃତ୍ତ ଛନ୍ଦ । ପାରଂପରିକ ରୀତିରେ ଯୁକ୍ତାକ୍ଷରକୁ ଗୋଟିଏ ଅକ୍ଷର ରୂପେ ଗଣାଯାଏ ।, ଯଥା–

　　ଉତ୍କଳ-କମଳା-ବିଳାସ-ଦୀର୍ଘିକା
　　ମରାଳମାଳିନୀ ନୀଳାମ୍ବୁ ଚିଲିକା ।

କିନ୍ତୁ ମାତ୍ରାବୃତ୍ତ ଛନ୍ଦରେ ଯୁକ୍ତାକ୍ଷରକୁ ସଂସ୍କୃତ ରୀତିରେ ହ୍ରସ୍ୱ ଦୀର୍ଘ ବିଚାର କରି ଦୁଇଟି ଅକ୍ଷର ରୂପେ ଗଣାଯାଏ, ଯଥା,

　　ରଞ୍ଜିତ ଅସିଧାରେ, ଶତ୍ରୁ-ରକ୍ତ ଗାରେ,

ଏ ଦୁଇଟି ଛନ୍ଦ ମଧ୍ୟରୁ ଯେ କୌଣସି ଗୋଟିଏ ରୀତିରେ କବିତା ଲେଖିବା ଉଚିତ । କିନ୍ତୁ ଦୁଇଟିକୁ ମିଶାଇ ଖେଚେଡ଼ି କଲେ ଚଳିବ ନାହିଁ । ଧର, ମୁଁ ଯଦି ଏପରି ପଦଟିଏ ଲେଖେ :

ଅଙ୍ଗୁ ମୋହର ଶକ୍ତି ଗଲାଣି ଭାଜି, (୧୨ ଅକ୍ଷର)
ପଙ୍ଗୁ ହୋଇ ମୁହିଁ ଶୂନ୍ୟକୁ ଚାହିଁଛି ଆଜି । (୧୪ ଅକ୍ଷର)

ତେବେ ଏହା ଦୋଷଯୁକ୍ତ ରଚନା ହେବ । ପ୍ରଥମ ଧାଡ଼ିରେ ଯେଉଁ ଗୁରୁଲଘୁ ନିୟମ ଅନୁସୃତ ହୋଇଛି, ଦ୍ୱିତୀୟ ଧାଡ଼ିରେ ତାହା ହୋଇନାହିଁ । ଏହା ନିର୍ଦ୍ଦୋଷ ହେବ, ଯଦି ଏହିପରି ଲେଖାଯାଏ :

　　ଅଙ୍ଗୁ ମୋହର ଶକ୍ତି ଗଲାଣି ଭାଜି
　　ପଙ୍ଗୁ ହୋଇ ମୁଁ ଶୂନ୍ୟେ ଚାହିଁଛି ଆଜି ।

**ଉପଧା ମିଳନ :**

କବିତାକୁ ସୁଶ୍ରାବ୍ୟ କରିବାରେ ଉପଧା ମିଳନ ବହୁତ ସାହାଯ୍ୟ କରେ । ଏଥିରେ ଉପାନ୍ତ ବର୍ଣ୍ଣର ମିଳନ

---

ଚଳିବ ତ ? ଅର୍ଜୁନ ଦ୍ୱାରା କର୍ଣ୍ଣ ମରିବ ।" କୁନ୍ତୀ ଭାବିଲେ, କର୍ଣ୍ଣ କେତେ କାଳରୁ ତାଙ୍କ ପାଖରେ ନାହିଁ । ତା'ର ବିଚ୍ଛେଦ ସହିହେବ । ସେ କହିଲେ, "ହଁ ଚଳିବ ।" ତହୁଁ ବିଧାତା ଲେଖାଟିକୁ ସଂଶୋଧନ କଲେ । ସମସ୍ତେ କହିଲେ, "ତମର ଯେଉଁ ପାଞ୍ଚପୁଅ, ସେଇ ପାଞ୍ଚପୁଅ ହିଁ ରହିବେ । କର୍ଣ୍ଣ ମଲେ ପାଞ୍ଚ, ଅର୍ଜୁନ ମଲେ ବି ପାଞ୍ଚ ।" ଭବିଷ୍ୟତରେ ସେଇଆ ହିଁ ଘଟିଥିଲା ।

*ମୈତ୍ରୀନଗର, ଶିକ୍ଷକପଡ଼ା, ଅନୁଗୁଳ*



# କାଳିଆ ଷଣ୍ଢ

ଶ୍ରୀ କୁଞ୍ଜବିହାରୀ ସାହୁ

କୁଆଡ଼ୁ ଆସିଲା ଷଣ୍ଢଟି ଦିଶେ ମାରଣା ଭାରି
ଗୋଜିଆ ଗୋଜିଆ ଶିଙ୍ଗରେ କିବା ଦେବ ସେ ମାରି ।

ଡିମା ଡିମା କରି ଚାହୁଁଛି ପୁଣି ହଲାଏ ପିଠି
ଶିଙ୍ଗରେ ମାରିଲେ ଯାହାକୁ, ହେବ ସେ ଛାଟିପିଟି ।

ପଡ଼ାରେ ପଡ଼ାରେ ବୁଲିଲା ବଡ଼ ଆଁଟା କରି
ଛୁଆଠାରୁ ବୁଢ଼ା ପର୍ଯ୍ୟନ୍ତ ଗଲେ ସଭିଏଁ ଡରି ।

କଦଳୀ ଖାଇବ ବୋଲି କି ଗଲା 'ମାଷ୍ଟରପଡ଼ା'
ଠେଲା ଗାଡ଼ିଟିକୁ ଦେଖିଲା ଦଣ୍ଡେ ହୋଇଲା ଛିଡ଼ା ।
ପାହାରେ ଦେଲା ତ ଦୋକାନୀ, ଗଲା ନାହିଁ ସେ ଘୁଞ୍ଚି
ରାଗରେ କଦଳୀ, ସେଓକୁ ଦେଲା ରାସ୍ତାରେ ବିଞ୍ଚି ।

'ହାଟପଦା' ଆଡ଼େ ଧାଇଁଲା ସିଏ ପବନ ବେଗେ ।
ଖାଇଲା ପାକୁଳି ପରିବା, ଭାଜି ଶାଗକୁ ଆଗେ ।
ସଭିଏଁ କହିଲେ ଷଣ୍ଢଟି ସତେ ମାରଣା ପରା
ପାଖକୁ ଯାଅନା କିଏରେ, ସିଏ ଦେବନି ଧରା ।

ଏକାଠି ହୋଇଲେ ଦୋକାନୀ ମନେ ବିଚାର କରି
ମ୍ୟୁନିସ୍‌ପାଲିଟିବାଲାଙ୍କୁ ଡାକିଲେ ଫୋଅନ୍ ଧରି ।
ମ୍ୟୁନିସ୍‌ପାଲଟି ଲୋକେ ତ ଧରି ଆସିଲେ ଗାଡ଼ି
ଷଣ୍ଢଟିକୁ କାବୁ କରିଣ, ଦୂରେ ଦେଲେ ସେ ଛାଡ଼ି ।

(ପଶ୍ଚିମ ଓଡ଼ିଶାରେ ସାହି/ ଗଳିକୁ ପଡ଼ା କୁହନ୍ତି । ମାଷ୍ଟରପଡ଼ା, ହାଟପଦା ବରଗଡ଼ ସହରର ଛୋଟ ଜାଗାର ନାଁ ।)

*ଏଲ୍.ଆଇ.ଜି- ୧୫, ନୟାପଲ୍ଲୀ ବ୍ରିଟ୍ କଲୋନୀ, ଭୁବନେଶ୍ୱର*

---

ଘଟିଥାଏ । ପ୍ରଥମ ଧାଡ଼ି ଶେଷରେ 'ଆଜି' ଥାଇ ପର ଧାଡ଼ି ଶେଷରେ 'ଭୋଜି' ଥିଲେ ଉପଧା ମିଳନ ହୁଏ ନାହିଁ । 'ଆଜି' ତଳକୁ 'ରାଜି' ବା 'ମାଜି' ରଖିଲେ ଭଲ ଶୁଭେ । ଏହାହିଁ ଉପଧା ମିଳନ; ଯେପରି:

'କଉଡ଼ିଗଣାରେ ପାହିଲା ରାତି
ଚୋର ନେଇଗଲା କଜଳପାତି ।'

କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ଉପଧା ମିଳାଇ କବିତା ଲେଖିଥିଲେ । ତାଙ୍କ ପରବର୍ତ୍ତୀ କାଳର କବିମାନଙ୍କ ମଧ୍ୟରୁ ସମସ୍ତେ ଏହାକୁ କଡ଼ାକଡ଼ି ଭାବରେ ମାନିନାହାନ୍ତି ସତ, କିନ୍ତୁ ଉପଧାମିଳନ ଯେ କବିତାର ଲାଳିତ୍ୟ ବଢ଼ାଇଦିଏ, ଏଥିରେ ସନ୍ଦେହ ନାହିଁ । କବିତା ଲେଖୁଥିବା ବନ୍ଧୁମାନଙ୍କୁ ଆମର ଅନୁରୋଧ, ସେମାନେ ଏ ଦିଗରେ ଦୃଷ୍ଟି ଦେବେ । ରାଧାନାଥ ଗ୍ରନ୍ଥାବଳୀର ସମସ୍ତ କବିତା ଯଦି ଉପଧା ନିୟମରେ ଲେଖା ହୋଇପାରିଛି, ଏହା ପ୍ରକୃତ କବିମାନଙ୍କ ପକ୍ଷରେ କଷ୍ଟକର ହେବ କାହିଁକି ? ତେବେ ଏଥି ସଙ୍ଗେ ସଙ୍ଗେ ଆମେ କହିରଖୁଛୁ ଯେ ଓଡ଼ିଆ ପଦ୍ୟରେ ଉପଧା ମିଳନ ସ୍ପୃହଣୀୟ ହେଲେହେଁ ବାଧ୍ୟତାମୂଳକ ନୁହେଁ ।

**(ରାମକୃଷ୍ଣ ନନ୍ଦଙ୍କ 'ଲେଖନୀର ପାଠଶାଳା' ବହିରୁ ଉଦ୍ଧୃତ ।)**



# ଆମ ବିଦ୍ୟାଳୟ

ଶ୍ରୀ ମାଧବାନନ୍ଦ ପଣ୍ଡା

ଆମ ବିଦ୍ୟାଳୟ ନୁହେଁ ଖାଲି ଭାଇ
ଇଟା, ସିମେଣ୍ଟର ଘର
ମଣିଷ ତିଆରି କାରଖାନା ସିଏ
ଅଟଇ ଜ୍ଞାନମନ୍ଦିର ।
ପୁରୋହିତ ଯେହ୍ନେ ମୃତ୍ତିକା ମୂର୍ତ୍ତିରେ
ଦେଇଥାନ୍ତି ଜୀବନ୍ୟାସ
ଗୁରୁ ଜ୍ଞାନ ଦାନ କରି ଜୀବନରେ
ଦିଅନ୍ତି ଭରି ସୁବାସ ।
ବିଦ୍ୟା ତ ଅଟଇ ମହାଧନ କେହି
ନ ପାରିବେ ଚୋରି କରି
ଯେତେ କଲେ ଦାନ ହୁଅଇ ବର୍ଦ୍ଧିତ
କ୍ଷୟ ନୁହଁଇ ତାହାରି
ବିଦ୍ୟାହୀନ ଜନ ନୁହଁଇ ଶୋଭନ
ଅଟଇ ପଶୁ ସମାନ
ଜ୍ଞାନୀଗୁଣୀ ଜନ ଦେଶ-ବିଦେଶରେ
ଲଭିଥାଏ ସନମାନ
ଜୀବନକୁ ବିଦ୍ୟା କରଇ ମହତ
ଚିନ୍ତା ହୁଏ ସମୁନ୍ନତ
ସ୍ନେହ, ପ୍ରେମ, ଦୟା, ମାନବିକତାର
ତରୁ ହୁଏ ବିବର୍ଦ୍ଧିତ ।
ଶ୍ରଦ୍ଧା ଓ ସାଧନା ଏ ଜ୍ଞାନ ଯାନର
ଅଟନ୍ତି ଦୁଇଟି ଅଶ୍ୱ
ବିବେକ ସାରଥି ହୋଇଲେ ସଠିକ
ପଥେ ଚାଲିବ ଅବଶ୍ୟ ।
ବିଦ୍ୟାଳୟ ଆମ୍ଭ ମାତାଠାରୁ ବଡ଼
ପିତାଙ୍କଠାରୁ ମହାନ
ଜୀବନ ସାର୍ଥକ ହୋଇଲେ ଆମ୍ଭର
ବଢ଼ିବ ତାହାର ମାନ ।
ଯେଉଁ ବିଦ୍ୟାଳୟେ ପଢ଼ିଥିବେ ପାଠ
ଲିଙ୍କନ, ବିବେକାନନ୍ଦ
ଅଙ୍ଗ ସାନସୁକି ନେଲସନ ମାଣ୍ଡେଲା
ଗାନ୍ଧୀ ଅବା ଅରବିନ୍ଦ ।
ସେ ମହାନ ଛାତ୍ର ମାନଙ୍କ ସକାଶେ
ସେହି ବିଦ୍ୟାଳୟ ମାନ
ଚିରକାଳ ପାଇଁ ଗୌରବ ମଣ୍ଡିତ
ହୋଇ ଲଭୁଥିବେ ମାନ ।
ନେବା ଏହି ଦୀକ୍ଷା ଲାଭ କରି ଶିକ୍ଷା
ମାନବ କଲ୍ୟାଣ ପାଇଁ
କରିଯିବା ତ୍ୟାଗ ବିଦ୍ୟାଳୟ ହେବ
ଗର୍ବିତ ଆମରି ପାଇଁ

*ଏନ୍.ଭି.୩୩, କସୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା-୭୫୪୨୧୧*





# ସମୟ ଚକ୍ରରେ ଅଜନ୍ତା ଗୁମ୍ଫା

ପ୍ରାୟ ଖ୍ରୀ:ପୂ: ୨୩୦ରେ ବିଦେଶୀ ଆକ୍ରମଣ ଏବଂ ପୂର୍ବର ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଶତବାହନ ଭାରତରେ ଶାନ୍ତି ଆଣିଥିଲେ । ସେଇ ଶତବାହନଙ୍କ ରାଜତ୍ୱ ସମୟରେ ଭାରତର ମହାରାଷ୍ଟ୍ରରେ ଥିବା ଏହି ଗୁମ୍ଫା ସ୍ମାରକଗୁଡ଼ିକର ପ୍ରଥମ ଗୁମ୍ଫାଟି ପଥରରେ ନିର୍ମିତ ହୋଇଥିଲା । ସେହି ସମୟରେ ବର୍ତ୍ତମାନର ଗୁମ୍ଫା-ଗୁଡ଼ିକରୁ କେତେକ ନିର୍ମିତ ହୋଇଥିଲା, ତାର କୌଣସି ପ୍ରମାଣ ନାହିଁ । କୋଣସି କାରଣବଶତଃ ଏଗୁଡ଼ିକ ପରିତ୍ୟକ୍ତ ହୋଇ ପଡ଼ିରହିଲା ।

ପ୍ରାୟ ଦୁଇଜହାର ବର୍ଷ ପୂର୍ବେ ପୁନଶ୍ଚ ଜଣେ ସମସାମୟିକ ଆକ୍ରମଣକାରୀ ଏବଂ ବିଦେଶୀ ସାମ୍ରାଜ୍ୟର ପ୍ରତିନିଧିଙ୍କ ଦ୍ୱାରା ଗୁମ୍ଫାର ଅବସ୍ଥିତି ପୁନଃ ଆବିଷ୍କୃତ ହୋଇଥିଲା ।

ଏହାପରେ ଏହି ଗୁମ୍ଫା ସ୍ମାରକଗୁଡ଼ିକ ଉପରେ ବ୍ୟାପକ ଭାବରେ କାର୍ଯ୍ୟ ଆରମ୍ଭ ହେଲା । ଶହେ ବର୍ଷର ଅବଧି ମଧ୍ୟରେ ଏକତିରିଶଟି ସ୍ମାରକ ଖୋଦନ କରାହେଲା ପଥର ମୁହଁରୁ । ଅନୁମାନ କରାଯାଏ ଯେ ୧୦୦୦ ଶତାବ୍ଦୀରେ ସେଗୁଡ଼ିକ ଅଦରକାରୀ ହୋଇ ପଡ଼ିରହିଲା । ଘଞ୍ଚ ଜଙ୍ଗଲ ବଢ଼ି ଗୁମ୍ଫାଗୁଡ଼ିକୁ ମନୁଷ୍ୟ ଆଖିରୁ ଲୁଚେଇଦେଲା ।

ଦ୍ୱିତୀୟ ନିର୍ମାଣ କେବେ ହୋଇଥିଲା, ଏହାକୁ ନେଇ ବହୁ ତର୍କ ହୋଇଥିଲା । ତେବେ ବହୁମତାନୁସାରେ ପ୍ରାୟତଃ ୪୬୦ ଖ୍ରୀ:ଅ ରେ ହରିସେନାଙ୍କ ରାଜତ୍ୱ ସମୟରେ ୨୦ ବର୍ଷ ଧରି ଏହି କାର୍ଯ୍ୟ ହୋଇଥିଲା । ଏହି ସ୍ଥାପତ୍ୟ କଳା ନିର୍ମାଣ ଫଳରେ କୋଡ଼ିଏଟି ମନ୍ଦିର ଗଢ଼ିଉଠିଥିଲା, ଯାହା ପୂର୍ବରୁ ମଠ ଭାବରେ ବ୍ୟବହୃତ ହେଉଥିଲା ।

ଚଟାଣକୁ ଛାଡ଼ି ଗୁମ୍ଫାର ସମସ୍ତ ସ୍ଥାନ ବର୍ଣ୍ଣନାତ୍ମକ ଚିତ୍ର ଦ୍ୱାରା ସଜ୍ଜିତ ହୋଇଛି । କାଳର କରାଳ ପ୍ରଭାବରେ ଏହି ଆଶ୍ଚର୍ଯ୍ୟଜନକ କାରୁକାର୍ଯ୍ୟଗୁଡ଼ିକର କେବଳ ଖଣ୍ଡବିଖଣ୍ଡ ଅଂଶ ବର୍ତ୍ତମାନ ବିଦ୍ୟମାନ । ଏଥିରେ ଖୋଦିତ ଗଳ୍ପଗୁଡ଼ିକ ସଂପୂର୍ଣ୍ଣ ଭାବରେ ବୁଦ୍ଧଙ୍କ ପୂର୍ବଜନ୍ମକୁ ସମର୍ପିତ



ପୃଷ୍ଠଦେଶର ଏକ ଅଂଶ ହୋଇଯାଏ । ଏହାଦ୍ୱାରା ରଙ୍ଗ ସହଜରେ ଛାଡ଼ିଯାଏ ନାହିଁ । ବୋଧହୁଏ କଳାକାରମାନେ ମଧ୍ୟ ପୂର୍ବାନୁମାନ କରି ନ ଥିଲେ ଯେ ଏହି କଳାକୃତିଗୁଡ଼ିକ ୨୦୦୦ ବର୍ଷ ଧରି ରହିବ ।

ଦୁଃଖର କଥା କେହି ଠିକ୍ ଭାବରେ ଜାଣିନାହାନ୍ତି କେବେ ଓ କାହିଁକି ଏହି ଗୁମ୍ଫାଗୁଡ଼ିକ ପରିତ୍ୟକ୍ତ ହୋଇଥିଲା । ହୁଏତ କୌଣସି ରାଜନୈତିକ ଏବଂ ସାମାଜିକ ଘଟଣାର ପରିଣାମସ୍ୱରୂପ ଧୀରେ ଧୀରେ ଅବହେଳିତ ହୋଇ ବର୍ଷ ବର୍ଷ ଧରି ଅଜନ୍ତା ଗୁମ୍ଫାଗୁଡ଼ିକ ଶାନ୍ତ ଭାବରେ ପଡ଼ିରହିଲା । ଶେଷରେ ଏହା ପରିତ୍ୟକ୍ତ ହୋଇଥିଲା ।

କରାଯାଇ 'ଜାତକ ଗଳ୍ପ' ଭାବରେ ନାମିତ ହୋଇଛି । ଏହି ୫୪୭ଟି କବିତା ଅତି ସୁନ୍ଦର ଏବଂ ବହୁ ପରିଶ୍ରମପୂର୍ବକ ଭକ୍ତମାନଙ୍କ ଦ୍ୱାରା କାନ୍ଥରେ ଖୋଦିତ ହୋଇଛି ।

ଏହି ଗୁମ୍ଫାସବୁ ଏକ ପୁରାତନ ପ୍ରକ୍ରିୟାରେ ସୃଷ୍ଟି କରାଯାଇଥିଲା । ଏହାର ଉପରିଭାଗକୁ ନିହାଣରେ ଖୋଳାଯାଇଥିଲା, ଯାହାଫଳରେ କି ଏହା ପଲସ୍ତରାକୁ ଧରିପାରିବ । ତା'ପରେ ଏହି ପଲସ୍ତରାକୁ ପୃଷ୍ଠଦେଶରେ ଖେଳାଇ ଦିଆଯାଉଥିଲା । ତା'ପରେ ମୁଖ୍ୟ କଳାକାର ପଲସ୍ତରା ଓଦା ଥିଲାବେଳେ କାର୍ଯ୍ୟ ଆରମ୍ଭ କରନ୍ତି । ପଲସ୍ତରା ଓଦା ହୋଇଯିବା ପରେ ଦିଆଯାଇଥିବା ରଙ୍ଗ

ପ୍ରାୟ ଏକଶହ ବର୍ଷ ଧରି ଏହି ସ୍ଥାନ ପରିତ୍ୟକ୍ତ ହୋଇ ପଡ଼ିରହିବା ପରେ ଏପ୍ରିଲ୍ ୧୮୧୯ ମସିହାରେ ଭାରତରେ ବ୍ରିଟିଶ୍ ଶାସନ ସମୟରେ ଜନ୍ ସ୍ମିଥ୍ ନାମରେ ଜଣେ ବ୍ରିଟିଶ୍ ଅଫିସର୍ ସେହି ଜଙ୍ଗଲରେ ବାଘ ଶିକାର କରିବା ସମୟରେ ସେହିଠାରେ ମନ୍ଦିରର ଗୋଟିଏ ଦ୍ୱାର ପୁନଃ ଆବିଷ୍କାର କଲେ । ସେତେବେଳେ ଗୋଟିଏ କାନ୍ଥରେ

ସେ ତାଙ୍କର ନାମ ଓ ତାରିଖ ଖୋଦେଇ କରି ଦେଇଥିଲେ, ଯାହାକି ଆଜି ମଧ୍ୟ ଦୃଶ୍ୟମାନ ।

ଏହି ପୁନଃଆବିଷ୍କାର ବେଶି ଦିନ ଯାଏ ଗୁପ୍ତ ରହିଲା ନାହିଁ । ଶୀଘ୍ର, ୟୁରୋପୀୟ ଓ ଭାରତୀୟ ପରିଦର୍ଶକମାନେ ସେହି ସ୍ଥାନରେ ଭିଡ଼ ଜମାଇଲେ । ଏହିପରି ଶହେ ବର୍ଷ ଧରି ଏହି ସ୍ଥାନଟି ବାଦୁଡ଼ି, ପକ୍ଷୀ ଏବଂ ବୃହତ୍ ପ୍ରାଣୀଙ୍କର ବାସସ୍ଥାନ ହୋଇ ରହିବା ପରେ, ଏଠାରେ ପୁଣି ମାନବର ପାଦ ପଡ଼ିଥିଲା ।

ଗୁମ୍ଫାର ଅନତିଦୂର ଅଜିନ୍ତ ଗ୍ରାମରେ ଆଜି ଜନବସତି ଗଢ଼ିଉଠିଛି । ଖ୍ରୀଃପୂଃ ଦ୍ୱିତୀୟ ଶତାବ୍ଦୀରୁ ଥିବା ଏହି କୀର୍ତ୍ତିଗୁଡ଼ିକୁ ଛତିଆ-ଗୃହ କୁହାଯାଉଥିଲା । ମୁଖ୍ୟତଃ ସେଗୁଡ଼ିକ ପ୍ରାର୍ଥନା ଗୃହ ଭାବରେ ବ୍ୟବହାର କରାଯାଉଥିଲା ଏବଂ ସେଗୁଡ଼ିକ ରୋମୀୟ କାରୁକାର୍ଯ୍ୟର ସମକାଳୀନ ଥିଲା । ଏହି କୀର୍ତ୍ତିସମୂହ ଗୁମ୍ଫାର ବିଶାଳ ପଥର ମୁହଁରୁ ନିହାଣ ଦ୍ୱାରା ଏବଂ ହାତରେ ଖୋଳାଯାଇ ନିର୍ମାଣ କରାଯାଇଥିଲା । ଏହା ଆର୍ଶ୍ଚର୍ଯ୍ୟଜନକ ନୁହେଁ କି !!

# ମହାର୍ଘ ସମ୍ପଦ

ଶ୍ରୀ ଦେବେନ୍ଦ୍ର ନାଥ ପ୍ରଧାନ

ସାଉଦି ଆରବରେ ବୁଖାରୀ ନାମକ ଜଣେ ବିଦ୍ୱାନ ବ୍ୟକ୍ତି ରହୁଥିଲେ। ସ୍ୱୀୟ ସାଧୁତା, ନିଷ୍ଠା, ସଚ୍ଚୋଟପଣିଆ ତଥା ଚରିତ୍ରବତ୍ତା ନିମନ୍ତେ ସେ ପ୍ରସିଦ୍ଧି ଲାଭ କରିଥିଲେ। ଥରେ ସମୁଦ୍ର ପଥରେ ଏକ ଦୀର୍ଘ ଯାତ୍ରାରେ ଯାଉଥିଲେ। ଯାତ୍ରା ସ୍ଥଳେ ଆବଶ୍ୟକବେଳେ ଖର୍ଚ୍ଚ କରିବା ନିମନ୍ତେ ସେ ସାଥିରେ ଏକ ହଜାର ଦିନାର ଏକ ପୁଟୁଳାରେ ବାନ୍ଧି ନେଇଥିଲେ। ମୁଦ୍ରା ଥିବା ପୁଟୁଳାଟି ସେ ସର୍ବଦା ଅତି ସତର୍କତାର ସହ ନିଜ ହେପାଜତରେ ରଖୁଥିଲେ। ଯାତ୍ରା କାଳରେ ସହଯାତ୍ରୀଙ୍କ ସହ ତାଙ୍କର ପରିଚୟ ହେଲା। ସେମାନଙ୍କ ସହ ଜ୍ଞାନ ଚର୍ଚ୍ଚା ମାଧ୍ୟମରେ ସେ ଉପଯୁକ୍ତ ଦିଗ୍‌ଦର୍ଶନ ଦେଉଥାନ୍ତି। ସେହି ଯାତ୍ରୀଙ୍କ ମଧ୍ୟରୁ ଜଣେ ଯାତ୍ରୀ କିଛି ଦିନ ଯାତ୍ରା ପରେ ତାଙ୍କର ଅତି ଅନ୍ତରଙ୍ଗ ହୋଇଗଲା। ଖୁବ୍ ନିକଟତର ହେବା କାରଣରୁ ବୁଖାରୀ ଦିନେ କଥା ହେଉ ହେଉ ନିଜ ନିକଟରେ ରଖିଥିବା ସେହି ପୁଟୁଳିଟିକୁ ଦେଖାଇଦେଲେ। ଏତେ ପରିମାଣରେ ଅର୍ଥ ଥିବା ପୁଟୁଳି



ଭିତରେ ଥିବା ଜାଣିବା ପରେ ସହଯାତ୍ରୀଜଣଙ୍କ ଲୋଭାସକ୍ତ ହୋଇ କୌଣସି ପ୍ରକାରେ ଏହାକୁ ହାତେଇନେବା ଚିନ୍ତାରେ ରହିଲେ। ଏହି ପୁଟୁଳିଟି ଯେ କୌଣସି ପ୍ରକାରେ କରାୟତ୍ତ ଯୋଜନା କଲେ ସହଯାତ୍ରୀ।

ଦିନେ ହଠାତ୍ ସହଯାତ୍ରୀଜଣଙ୍କ ଖୁବ୍ ଜୋରରେ ଚିତ୍କାର କରିବାକୁ ଲାଗିଲେ, "ମରିଗଲି, ମରିଗଲି, ମୋର ସବୁ ଚାଲିଗଲା।"

ଜାହାଜର ଯାତ୍ରୀମାନେ ହଠାତ୍ ଘଟଣା କ'ଣ ଜାଣିବା ପାଇଁ ତାଙ୍କ ନିକଟକୁ ଆସି ପଚାରିବାରୁ ଯାତ୍ରୀଜଣଙ୍କ କହିଲେ, "ମୋ' ପାଖରେ ଥିବା ହଜାରେ ଦିନାର ଚୋରି ହୋଇଯାଇଛି।" ଏହା କହି ସେ କାନ୍ଦିବାକୁ ଲାଗିଲେ। ଜାହାଜର କର୍ମଚାରୀମାନେ ଯାତ୍ରୀଙ୍କ ନିକଟକୁ ଆସି କହିଲେ, "ଏତେ ବ୍ୟସ୍ତ ହୁଅନ୍ତୁ ନାହିଁ। ଯାହା ଚୋରି ହୋଇଛି, ଏଇ ଜାହାଜରେ ହିଁ ହୋଇଛି। ଚୋରି ଅର୍ଥ ନିଶ୍ଚୟ ଏହି ଜାହାଜ ଭିତରେ ଥିବ। ଆମେ ଜଣ ଜଣ କରି ପ୍ରତ୍ୟେକ ଯାତ୍ରୀ ଓ ସେମାନଙ୍କର ଆସବାବପତ୍ର ତଥା ଜାହାଜର ବିଭିନ୍ନ ଜିନିଷର ତଲାସ କରିବୁ। ସେଇ ଧନ ମିଳିଯିବ ବୋଲି ଆମର ବିଶ୍ୱାସ। ଚୋରକୁ ମଧ୍ୟ ଆମେ ଧରିପାରିବୁ।"

ଯାତ୍ରୀଙ୍କ ତଲାସି ଆରମ୍ଭ ହୋଇଗଲା। ଯେତେବେଳେ ବୁଖାରୀଙ୍କୁ ତଲାସିବାକୁ ଜାହାଜ କର୍ମଚାରୀ ଆସିଲେ, ସେତେବେଳେ ପାଖ ଯାତ୍ରୀଜଣଙ୍କ କହିଲେ, "ତାଙ୍କ ଭଳି ସଚ୍ଚୋଟ, ସତ୍ୟବାଦୀ, ସାଧୁଙ୍କୁ ତଲାସିବାକୁ ଯାଉଛନ୍ତି କାହିଁକି? ଏହାଦ୍ୱାରା ତାଙ୍କ ମନରେ ଦୁଃଖ ହେବ ନିଶ୍ଚୟ।"

"ଚୋରି ଦିନାର ଉଦ୍ଧାର କରି ତାଙ୍କ ଦୁଃଖ ଦୂର କରିବା ଆପଣଙ୍କର କର୍ତ୍ତବ୍ୟ। ଏ କ୍ଷେତ୍ରରେ ମୋର ତଲାସି

ନେଲେ ମୁଁ କାହିଁକି ବା ଦୁଃଖ କରିବି ? ଆପଣ ମୋର ତଲାସି ନିଅନ୍ତୁ।" ବୁଖାରୀଙ୍କ ଇଚ୍ଛା ଅନୁଯାୟୀ ତାଙ୍କର ତଲାସି ନିଆଗଲା , ହେଲେ ତାଙ୍କଠାରୁ କିଛି ମିଳି ନ ଥିଲା।

ଏ ଘଟଣାର ଦି'ଦିନ ବିତିଗଲା। ଅଭିଯୋଗ କରିଥିବା ଯାତ୍ରୀଜଣଙ୍କ ଉଦାସ ମନରେ ବୁଖାରୀଙ୍କୁ ପଚାରିଲେ, "ଆପଣଙ୍କ ନିକଟରେ ତ ଏକହଜାର ଦିନାର ଥିଲା, ତାକୁ କ'ଣ କଲେ?" ଏହା ଶୁଣି ବୁଖାରୀ ଈଷତ୍ ହସି କହିଲେ, "ସେ ସବୁକୁ ମୁଁ ସମୁଦ୍ରରେ ଫିଙ୍ଗିଦେଲି। ତୁମେ ଜାଣିବାକୁ ଚାହୁଁଛ କାହିଁକି ? ଏହାକୁ ମୁଁ ସମୁଦ୍ରରେ ଫିଙ୍ଗିଦେଲି, କାରଣ ଏହି ଯେ ଜୀବନରେ ମାତ୍ର ମୁଁ ଦୁଇଟି ସମ୍ପଦ କମାଇଥିଲି। ଗୋଟିଏ ହେଲା-- ସତ୍ୟବାଦିତା, ଦ୍ୱିତୀୟଟି ହେଲା ଲୋକଙ୍କର ବିଶ୍ୱାସଭାଜନ। ଯଦି ମୋ ନିକଟରୁ ଜାହାଜର କ୍ୟାପଟେନ୍ ଦିନାର ଜବତ କରିଥା'ନ୍ତେ, ମୁଁ ଯାତ୍ରୀମାନଙ୍କୁ କହିଥା'ନ୍ତି, ଏହା ମୋର ସମ୍ପଦ, ମୋର ଚୋରି ଦିନାର ନୁହେଁ। କିଛି ଲୋକ ଏହାକୁ ବିଶ୍ୱାସ କରି ନ ଥା'ନ୍ତେ। ମୋର ସଚ୍ଚୋଟତା, ସାଧୁତା ଉପରେ ପ୍ରଶ୍ନ ଆରୋପ କରିଥା'ନ୍ତେ। ମୁଁ ଅର୍ଥ ଓ ସମ୍ପତ୍ତି ଜୀବନକାଳରେ କମାଇ ପାରିବି , କିନ୍ତୁ ସାଧୁତା ଓ ସତ୍ୟବାଦିତାକୁ ଜଳାଞ୍ଜଳି ଦେଇ ନୁହେଁ। ଏହି ଦୁଇଟି ମୋ ଜୀବନର ଶ୍ରେଷ୍ଠ ସମ୍ପଦ। ଥରେ ଏହି ଦୁଇଟିରେ କଳଙ୍କ ଲାଗିଲେ, ସେ ଦାଗ ସହଜରେ ଛାଡ଼େନାହିଁ।" ଯାତ୍ରୀଜଣଙ୍କ ନିଜକୁ ଲଜ୍ଜିତ ବୋଧକରି ବୁଖାରୀଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ।

ସଚ୍ଚୋଟତା, ସତ୍ୟବାଦିତା, ସାଧୁତା ସବୁଠୁ ବଡ଼ ସମ୍ପଦ।

*ଅନ୍ତପାଲି, କମଗାଁ, ବରଗଡ଼- ୭୫୪୦୩୮* ❀




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧। ସେବାକର (Service Tax) ଭାରତରେ ପ୍ରଥମେ କେଉଁ ମସିହାରେ ପ୍ରଚଳନ ହୋଇଥିଲା ?

୨। ପ୍ରସିଦ୍ଧ ନୃତ୍ୟ କାଗ୍ୟାତ୍(Kagyat) ପାଇଁ କେଉଁ ରାଜ୍ୟ ପ୍ରସିଦ୍ଧ?

୩। ମୁସଲମାନ ଶାସନ (Muslim Rule) କେଉଁ ମସିହାରୁ ଓଡ଼ିଶାରେ ଆରମ୍ଭ ହୋଇଥିଲା?

୪। ଏକତା ଏବଂ ଶୃଙ୍ଖଳା (Unity and Discipline) କେଉଁ ସଂଗଠନର ମୂଳମନ୍ତ୍ର (Motto) ଅଟେ?

୫। ତଟରକ୍ଷୀ ବାହିନୀ (Coast Guard) କେବେ ପ୍ରତିଷ୍ଠିତ ହୋଇଥିଲା ?

୬। ଥାଇଲ୍ୟାଣ୍ଡର ମୁଦ୍ରାର ନାମ କ'ଣ ?

୭। ଚାଇନାମ୍ୟାନ୍ (Chinaman) ଶବ୍ଦଟି କେଉଁ ଖେଳ ସହ ସମ୍ପୃକ୍ତ?

୮। ପ୍ରସିଦ୍ଧ ପଦ୍ମନାଭ ମନ୍ଦିର କେଉଁଠାରେ ଅବସ୍ଥିତ?

୯। PETAର ପୂର୍ଣ୍ଣରୂପଟି କ'ଣ ?

୧୦।୨୦୧୩ ମସିହାର ଟାଗୋର ଶାନ୍ତି ପୁରସ୍କାର (Tagore Peace Prize) କାହାକୁ ପ୍ରଦାନ କରାଯାଇଛି?

*ଦୁର୍ଗାପୁର, ତାଳଚେର, ଅନୁଗୁଳ- ୭୫୯୧୦୦*

(ଉତ୍ତର ୩୩ ପୃଷ୍ଠାରେ)



# ଦେଖି, ଶିଖି, ପଢ଼ି, ଗଢ଼ିବା ଜୀବନ

ଶ୍ରୀ ପୀତାମ୍ବର ମିଶ୍ର

ଶବ୍ଦ ଶୁଣି ଧାବମାନ ମୃଗ
ଅଟକିଯାଏ ସେ ଆଶଙ୍କା ତେଜି
ଶିକାରୀ ହାତରେ ହାରଇ ପରାଣ
ଶ୍ରବଣେନ୍ଦ୍ରିୟର ଲୋଭରେ ମଜ୍ଜି ।

ହାତୀ ପରି ମହାବଳଶାଳୀ ଜନ୍ତୁ
ସ୍ପର୍ଶନେନ୍ଦ୍ରିୟର ଶିକାର ହୋଇ
ସଂଯମ ବିହୁନେ ଭୋଗଇ କଷଣ
ମାହୁନ୍ତକୁ ପୋଷେ ଉପାସ ରହି ।

ଦର୍ଶନେନ୍ଦ୍ରିୟର ଆସକ୍ତି ଫଳରେ
ନିଆଁକୁ ପତଙ୍ଗ ଆପଣା ମଣି
ଜଳିପୋଡ଼ି ସିଏ ପାଉଁଶ ହୁଅଇ
ତଥାପି ପତଙ୍ଗ ପାରେନି ଜାଣି ।

ଜିଭର ଲାଳସା ତୁଟାଇ ନ ପାରି
ଗଭୀର ଜଳରେ ଥାଇ ବି ମୀନ
ରସନେନ୍ଦ୍ରିୟକୁ ଆୟତ୍ତ ନ କରି
ବନ୍‌ସୀ କଣ୍ଟାରେ ଦିଏ ଜୀବନ ।

ପ୍ରଭାତରେ ପଦ୍ମ ବିକଶିଲେ ଜଳେ
ଘ୍ରାଣେନ୍ଦ୍ରିୟ ଲୋଭେ ବସି ଭ୍ରମର
ପ୍ରଦୋଷେ ପଦୁଅଁ ପାଖୁଡ଼ା ବୁଜିଲେ
ଶ୍ୱାସରୁଦ୍ଧେ ପ୍ରାଣ ଯାଏ ତାହାର ।

କୁରଙ୍ଗ, ମାତଙ୍ଗ, ପତଙ୍ଗ, ଭ୍ରମର
ଜଳଚର ହୋଇ ଜଳରେ ମୀନ,
ଇନ୍ଦ୍ରିୟ ମୋହକୁ ତୁଟାଇ ନ ପାରି
ଅକାଳରେ ମୃତ୍ୟୁ କରେ ବରଣ ।

ଦୁର୍ଲଭ ଜନମ ପାଇଛି ମାନବ
ବିଭୁଙ୍କର ସେ ତ ଅମୂଲ୍ୟ ଦାନ,
ପଞ୍ଚ ଜ୍ଞାନେନ୍ଦ୍ରିୟ ପଞ୍ଚ କର୍ମେନ୍ଦ୍ରିୟ
ଅଛି ପୁଣି ତାର ବିବେକ ଜ୍ଞାନ ।

ଇନ୍ଦ୍ରିୟ ଲାଳସା ବଢ଼ାଏ ପିପାସା
ହଜାଏ ମନରୁ ଦିବ୍ୟ ଭାବନା,
ଆସଇ ବିପତ୍ତି ନାଶଇ ସମ୍ପତ୍ତି
ତା'ଲାଗି ମାନବ ସହେ ଯାତନା ।
ଇନ୍ଦ୍ରିୟଙ୍କ ଗୁରୁ ଅଟେ ଆମ ମନ
ଆମେ କେବେ ତାର ହେବାନି ଦାସ,
ସଂଯମ ବ୍ରତକୁ ଆଚରିବା ଯେବେ
ହୋଇବା ଆମେରେ ମନର ଈଶ ।
ଦେଖି, ଶିଖି, ପଢ଼ି, ଗଢ଼ିବା ଜୀବନ
ପାଳିବାକୁ ସଦା ଆଦର୍ଶ ନୀତି
ଚିନ୍ତା, କଥା, କାମ ଏକ ହେଲେ ଆମ
ମରତେ ଲଭିବା ସରଗ ଶାନ୍ତି ।

*ବାଗଦାବିନାୟକପୁର, ବାସୁଦେବପୁର, ଭଦ୍ରକ*





# ଜନଶ୍ରୁତି-ଆମର ଢଗଢ଼ମାଳି

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

*"ନିକିତି ତଉଲ ସାନ ବଡ଼କୁ*
*ବଡ଼ ଯିଏ ହୁଏ ଯାଏ ତଳକୁ" ॥*

ଏହି ଢଗକୁ ନେଇ ଗୋଟିଏ କଥା ଅଛି । ହାସ୍ୟରସପ୍ରିୟ ଉତ୍କଳୀୟ ଆଶୁକବି ଏକଦା ଘଟଣାକ୍ରମରେ ଏହାକୁ ବୋଲିଥିଲେ । ଯାହା ଜଣାଯାଏ, ତାଙ୍କର ଜୀବନକାଳ ୧୮୦୦-୧୮୬୫ । ସେ ଆଠଗଡ଼ର ଏକ ବଢ଼େଇ ବଂଶରେ ଜନ୍ମ ହୋଇଥିଲେ ଏବଂ ନୟାଗଡ଼ ରାଜାଙ୍କ ଆଶ୍ରୟରେ ରହୁଥିଲେ । ଏହାଙ୍କ ହାସ୍ୟୋକ୍ତିପୂର୍ଣ୍ଣ ଗଳ୍ପଗୁଡ଼ିକ 'ଯଦୁମଣି ରହସ୍ୟ' ନାମକ ପୁସ୍ତକରେ ସଂଗୃହୀତ ହୋଇଅଛି । ଏବେ ତାଙ୍କୁ 'ଉତ୍କଳ ଘଣ୍ଟ' ଆଖ୍ୟା ଦିଆଯାଇଛି ।

ରାଜା ଦିନେ କେତେକ ରାଜକର୍ମଚାରୀଙ୍କ ସହ ପାଲିଙ୍କିରେ ବସି ଯାତ୍ରା କରୁଥିଲେ । ସେଥିରେ ଯଦୁମଣି ମଧ୍ୟ ସାମିଲ ଥିଲେ । ରାଜାଙ୍କ ପାଖେ ପାଖେ ରହି ଯଦୁମଣି ଚାଲିଥିଲେ । ରାଜା ତାଙ୍କୁ ବ୍ୟଙ୍ଗ କରି କହିଲେ, "ଦେଖ ଯଦୁମଣି! ତୁମେ କେତେ ତଳେ ଆଉ ମୁଁ କେତେ ଉପରେ ।" ଯଦୁମଣି ତ ଛାଡ଼ିବା ଲୋକ ନୁହନ୍ତି । ଠିକଣା ବେଳେ ଠିକଣା ପଦେ କହିଦିଅନ୍ତି । ରାଜାଙ୍କଠାରୁ ଏକଥା ଶୁଣି ସଙ୍ଗେ ସଙ୍ଗେ ଉତ୍ତର ଦେବାକୁ ଯାଇ ଢଗଟି ଗାଇଦେଲେ । ରାଜା ବି ଚୁପ୍ । ଢଗର ମର୍ମ ଅନୁସାରେ--ନିକିତି ବା ତରାଜୁରେ ଓଜନ କଲାବେଳେ ଅଧିକ ଓଜନ ତଳକୁ ଯିବ । ଏଣୁ ଯଦୁମଣି ଏହାଦ୍ୱାରା ପ୍ରମାଣ କରିଦେଲେ କି ସେ ରାଜାଙ୍କଠାରୁ ବଡ଼ ହେବାରୁ ତଳକୁ ଝୁଲି ପଡ଼ିଛନ୍ତି । ରାଜା ଏହା ଶୁଣି ବହୁତ ଖୁସି ହୋଇଥିଲେ । ଯେହେତୁ ସେ ସବୁବେଳେ ଯଦୁମଣିଙ୍କଠାରୁ ଏପରି ମଜା କଥା ଶୁଣିବା ପାଇଁ ଇଚ୍ଛା କରିଥା'ନ୍ତି ।

ଏହି ନିକିତି ବା ତରାଜୁର ଅନ୍ୟ ଗୋଟିଏ ପ୍ରତିଶବ୍ଦ ହେଲା 'ଦଣ୍ଡି' । ଏଣୁ ଦଣ୍ଡି ବ୍ୟବହାର କରି କାରବାର କରୁଥିବା ଲୋକଙ୍କୁ 'ଦଣ୍ଡିଆ' କୁହାଯାଇଥାଏ । ତରାଜୁ କଥା ଉଠିଲେ ଦୁଇ ବିଲେଇଙ୍କ ପିଠାକଳି କଥା ମନେପଡ଼ିଯାଏ । ତରାଜୁର କେତେ କରାମତି ଅଛି, ତାହା ଭଲ ରୂପେ ଜଣାପଡ଼ିଯାଏ । ଏହାକୁ ନେଇ ସ୍କୁଲରେ ପଢୁଥିବା ସମୟର କଥା ମନେପଡୁଛି ।

ଗାଁ ଛକରେ ବସିଥିବା ସମୟରେ ଅଖା ଭିତରେ କିଛି ଝୁଲାଇ ବାହାର ଲୋକ ଜଣେ ଆସୁ ଆସୁ କେହି କହି ଉଠିଲା, "ଦେଖରେ ଆସିଲା ଦଣ୍ଡିଆ ଦଣ୍ଡିମରା-- କିଣିବ ଯେତେରେ, ବିକିବ ସେତେରେ, ଦଶଟଙ୍କା ଅଣ୍ଟିପୂରା ।" ସମସ୍ତେ ହସି ଉଠିଲେ । ମୁଁ କିଛି ନ ବୁଝିଲେ ବି ସେମାନଙ୍କ ସଙ୍ଗେ ହସିଲି । ମୋତେ ବୁଝାଇ ଦିଆଗଲା ଯେ ବେପାରି ଦଣ୍ଡିରେ କାରସାଦି କରି କିଣିଲାବାଲାଠାରୁ ପ୍ରତି ଧଡ଼ାରେ କିଛି କିଛି ଅଧିକ ଗଡ଼ାଇ ନେଇଯାଉଛି ଏବଂ ବିକିଲା ଲୋକଙ୍କୁ ଓଜନରେ ଟିକିଏ ଟିକିଏ କମ୍ କରିଦେଉଛି । ଏପରି କରିବା ଦ୍ୱାରା କିଛି ଭଲ ପରିମାଣର ଶସ୍ୟ ତାର ହାତକୁ ଆସିଯାଉଛି, ସେତକ ତାର ଫାଇଦା ।

ଏହା ବହୁ ପୂର୍ବେ ଥିଲା । ମାତ୍ର ଏବକୁ ସାମାନ୍ୟ ତେଲ ଲୁଣଠାରୁ ଆରମ୍ଭ କରି ବହୁ ବଡ଼ ବଡ଼ କାରବାରରେ ତରାଜୁର କରାମତି ଦିନକୁ ଦିନ ପ୍ରବଳରୁ ପ୍ରବଳତର ହେବାରେ ଲାଗିଛି । କେବଳ ଖାଉଟିମାନେ ହିଁ ଏ ମହରଗ ସମୟରେ ଦୁର୍ଦ୍ଦଶା ଭୋଗୁଛନ୍ତି । ଏଥିପାଇଁ ଆଇନ ଅଛି । କାର୍ଯ୍ୟରେ ନୁହେଁ, କାଗଜପତ୍ରରେ । ତରାଜୁର କରାମତି ବିଷୟରେ କାରବାରକୁ ନେଇ ଆମେମାନେ ସମସ୍ତେ ଭଲ ଭାବରେ ଜାଣୁଛୁ । ମାତ୍ର, ବିନା କାରବାରରେ କେବଳ ତରାଜୁକୁ ଦେଖାଇ ଭଲ ରକମ ଫାଇଦା ଉଠାଇବାର କୌଶଳ ବିଷୟରେ ବହୁ ପୂର୍ବରୁ ରହି ଆସିଥିବା କାହାଣୀଟିଏ ଲେଖୁଛି ।

ପୂର୍ବ କାଳର କଥା । ଏକଦା ଗୋଟିଏ ରାଜ୍ୟରେ ମୋଫତମଲ୍ ନାମରେ ଜଣେ ଧୂର୍ତ୍ତ ଏବଂ ଚତୁର ଲୋକ ଥିଲେ । ନାମ ଯେପରି, କାମ ମଧ୍ୟ ସେପରି । ବିନା ପରିଶ୍ରମରେ ନିଜର ବୁଦ୍ଧି ବଳରେ ଲୋକଙ୍କ ପାଖରୁ ମାଗଣା ମୋଫତରେ ଖାଇବାରେ ଓସ୍ତାଦ୍ । ସେ ରାଜ୍ୟର ରାଜାଙ୍କ କାନକୁ ଏକଥା ଆସିଲା । ସେ ମୋଫତମଲ୍‌କୁ ଦରବାରକୁ ଡକାଇ ଧମକ ଦେଇ କହିଲେ, "ତୁମେ ଠକି ଖାଇବାରେ ପାରଙ୍ଗମ । ତୁମର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଖାଇବା ଚିନ୍ତା ଯେପରି ବଢ଼ିବ, ତାର ବନ୍ଦୋବସ୍ତ ମୁଁ କରିଦେଉଛି ।"

ମୋଫତମଲ୍ ହାତଯୋଡ଼ି କହିଲା, "ମହାରାଜ! ଚିନ୍ତାର କୌଣସି କାରଣ ନାହିଁ । ଯେଉଁଦିନ ଯାଏଁ ଏଇ ତରାଜୁଟି ମୋ ପାଖରେ ଅଛି, ମୋର କିଛି ଚିନ୍ତା ନାହିଁ ।" ରାଜା ରାଗି ଯାଇ କହିଲେ, "ବହୁଦିନଯାଏଁ ଲୋକଙ୍କୁ ଠକି ମାଗଣାରେ ଖାଉଥିଲ । ଏଥର ତୁମକୁ କାମ କରିବାକୁ ପଡ଼ିବ । କାଲିଠାରୁ ତୁମକୁ ଘୋଡ଼ାଶାଳର ତଦାରଖ ଦାୟିତ୍ୱ ଦିଆଗଲା । ପାରିଶ୍ରମିକ ସ୍ୱରୂପ ତୁମକୁ ଚଳିବା ପାଇଁ ସ୍ୱଳ୍ପ ବେତନ ଦିଆଯିବ । କାମରେ ଅବହେଳା କଲେ କଠିନ ଦଣ୍ଡ ମିଳିବ ।" ମୋଫତମଲ ତା'ର ତରାଜୁକୁ ଧରି ଘୋଡ଼ାଶାଳର ପ୍ରବେଶଦ୍ୱାରରେ ହାଜର । ସଫେଇ କର୍ମଚାରୀମାନେ ଘୋଡ଼ାଶାଳ ସଫା କରି ମଇଳା ଓ ଘୋଡ଼ାମଳ ନେଇ ବାହାରକୁ ଫୋପାଡ଼ି ଦେବାକୁ ଗଲାବେଳେ ମୋଫତମଲ କହିଲା, "ରୁହ । ମୁଁ ସବୁ ମଇଳା ଓ ମଳକୁ ଏଇ ତରାଜୁରେ ଆଗେ ଓଜନ କରି ଦେଖିବି । ଘୋଡ଼ାକୁ କେତେ ଦାନା ଦିଆଯାଉଅଛି, ତା'ର ହିସାବ ନେବି । ତୁମେମାନେ ଦାନାକୁ ବାଟମାରଣା କରୁଛ । ଘୋଡ଼ାକୁ କମ୍ ଦେଉଛ । ଘୋଡ଼ାମାନେ ଦିନକୁ ଦିନ ରୋଗଣା ହୋଇଯିବାରୁ ରାଜା ମୋତେ ତଦାରଖ କରିବାକୁ ନିଯୁକ୍ତି ଦେଇଛନ୍ତି । ଦାନାଠାରୁ ଯଦି ମଳ କମ୍ ହୁଏ, ତୁମକୁ ଦଣ୍ଡ ମିଳିବ । ରାଜାଙ୍କ ପାଖରେ ମୁଁ ପେଶ୍ (ରିପୋର୍ଟ)କରିବି ।"

କର୍ମଚାରୀମାନେ ଏକଥା ଶୁଣି ପରସ୍ପରକୁ ଅନାଅନି ହୋଇ କ'ଣ ଭାବିଲେ, ମୋଫତମଲ୍‌ର ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲେ । କହିଲେ, "ଆଜ୍ଞା, ଏତେ ଝାମଲାକୁ କାହିଁକି ଯିବା ? ବରଂ ଆପଣ ଏହିଠାରେ ବସନ୍ତୁ । ଯାହା ଦରକାର ଆମେ ଆଣିଦେବୁ ।" ସଙ୍ଗେ ସଙ୍ଗେ ସ୍ୱାଦିଷ୍ଟ ଖାଦ୍ୟ, ଫଳମୂଳ, ଦୁଧ, କାଜୁ, ମିଷ୍ଟାନ, ଖିସ୍‌ମିସ୍, ଘିଅ ଓ ମହୁ ଆସି ପହଞ୍ଚିଗଲା । ମୋଫତମଲ ତାହା ଖାଇ ଖୁସ୍ । କ୍ରମଶଃ ସେ ଏସବୁ ଖାଇପିଇ ମୋଟାସୋଟା ହୋଇ ଚିକ୍କଣିଆ ହୋଇଗଲା ।

ଦିନେ ରାଜା ଭାବିଲେ, "ମୁଁ ତ କମ୍ ଦରମାରେ ମୋଫତମଲକୁ ଦୁର୍ଗନ୍ଧିଆ ଘୋଡ଼ାଶାଳରେ କାମ ଦେଲି; ଦେଖେ ତାର ଅବସ୍ଥା । ଶୁଖି ଶୁଖି ବୋଧହୁଏ କଣ୍ଟା ହୋଇଯିବଣି । ରାଜା ଦେଖି କାବା ! "ଏ କ'ଣ, ମୋଫତମଲ୍ ଆଗ ଅପେକ୍ଷା ମୋଟାସୋଟା ହୋଇ

ଚିକଣିଆ ହୋଇଯାଇଛି।  ରାଜା ଭାବିଲେ ବୋଧହୁଏ ଏଠାରେ ଘୋଡ଼ାଙ୍କ ଦାନାରୁ ଭାଗ ମାରି ଭଲ କରି ଖାଦ୍ୟ ଖାଉଛି। ତେଣୁ ଯଦି ଏହାକୁ ସୈନ୍ୟବାହିନୀରେ ନିଯୁକ୍ତି ଦେବି, ତେବେ ଯିବ କୁଆଡ଼େ ? କାମ ନ କରି ଅଳସୁଆମି କଲେ ସିପାହୀମାନେ ବେଶ୍ ଉତ୍ତମ ମଧ୍ୟମ ଦେଇ ଖାଇବା ବନ୍ଦ କରି ଏହାକୁ ସାବାଡ଼ କରିଦେବେ। ଏଥର ବେଟା ଯିବ କୁଆଡ଼େ ?"

ସେ ଚିନ୍ତା କରି ମୋଫତମଲ୍‌କୁ କହିଲେ, "ତୁମକୁ କାଲିଠାରୁ ସେନ୍ୟବାହିନୀରେ ନିଯୁକ୍ତି ଦିଆଗଲା। ସିପାହୀମାନଙ୍କର ତଦାରଖ କରିବ।" ମୋଫତମଲ ମଥାନତ କରି କହିଲା, "ହଜୁର ! ଯେ ପର୍ଯ୍ୟନ୍ତ ଏ ତରାଜୁଟି ମୋ ପାଖରେ ଅଛି, ସେ ପର୍ଯ୍ୟନ୍ତ ମୋର ଚିନ୍ତା ନାହିଁ।"

ତା'ପରଦିନ ମୋଫତମଲ ତା'ର୍ ପ୍ରିୟ୍ ତରାଜୁକୁ ଧରି ସେନାଛାଉଣିର ଗେଟ୍ ମୁହଁରେ ବଡ଼ିଭୋରରୁ ଯାଇ ହାଜର। ସେତେବେଳେ ସିପାହୀମାନେ ସକାଳ ପ୍ୟାରେଡ୍‌ରେ ବାହାରନ୍ତି। ତାଙ୍କୁ କହିଲା, "ରୁହ, ତୁମର ସବୁ ଯୋତାକୁ ଓଜନ କରି ଏଇ ଖାତାରେ ଲେଖି ରଖିବି। ଫେରିଲାବେଳକୁ ମଧ୍ୟ ଓଜନ କରିବି। ତୁମେମାନେ ଠିକ୍ ଭାବେର ପ୍ୟାରେଡ୍ ନ କରି ଆରାମରେ ଗୋଟିଏ ଜାଗାରେ ବସି ମଜାଗପ କରୁଛ। ରାଜାଙ୍କ କାନରେ ଏକଥା ପଡ଼ିବାରୁ ମୋତେ ଏ କାମ ପାଇଁ ନିଯୁକ୍ତି ଦେଇଛନ୍ତି। ତୁମ ଯୋତା ଘୋରି ହୋଇ କେତେ କମ୍ ହୋଇଛି, ମୁଁ ଏହାକୁ ଖାତାରେ ଲେଖି ମାସକୁ ଦୁଇଥର ରାଜାଙ୍କୁ ରିପୋର୍ଟ କରିବି।"

ସେନାମାନେ ଏକଥା ଶୁଣି ରାଗି ନିଆଁବାଣ। ବହୁତ ଧମକଚମକ ଦେବାପରେ ମୋଫତମଲ୍ ଶୁଣିବାକୁ ନାରାଜ। ସେମାନଙ୍କ ମଧ୍ୟରେ ଆଲୋଚନା ହେଲା, "ଏ ଲୋକଟା ଧୂର୍ତ୍ତ, ବଦମାସ୍। ଯଦି ଏହା ସାଙ୍ଗରେ କଳି କରିବା, ଏ ଯାଇ ରାଜାଙ୍କ ଆଗରେ ସତମିଛ ଯୋଡ଼ି ଆମ ବିରୋଧରେ ଅନେକ କଥା କହିବ। ରାଜା ଏହା କଥାରେ ବିଶ୍ୱାସ କରି ଆମକୁ ଦଣ୍ଡ ଦେଇପାରନ୍ତି। ତେଣୁ ଏହାକୁ ହାତରେ ରଖିବା।"  ଜଣେ ସିପାହୀ କହିଲା, "ଆଜ୍ଞା, ଏତେ କଥାରୁ କ'ଣ ମିଳିବ? ଆମେ ଆପଣଙ୍କୁ ଭଲ ଖାଇବା ପିଇବାକୁ ଦେଇ ଆରାମରେ ରଖିବୁ। ଆପଣ ଚୁପଚାପ୍ ବସନ୍ତୁ।" ବାସ୍ ମୋଫତମଲ ଯାହା ଖୋଜୁଥିଲା, ତାହା ପାଇଗଲା। ଆଉ ଚିନ୍ତା କ'ଣ? ସେନାଛାଉଣିରେ ଉତ୍କୃଷ୍ଟ ଖାଦ୍ୟ-- ମାଛ, ମାଂସ, ଘିଅ, ଦୁଧ, ଲହୁଣି , ସ୍ୱାଦିଷ୍ଟ ଅନ୍ନ ଖାଇ ଆରାମରେ ରହିଲା। ଦିନକୁ ଦିନ ତାର ବପୁ ବଢ଼ି ପହିଲ୍‌ମାନ୍ ପରି ଚେହେରା ହୋଇଗଲା।

କିଛିଦିନ ପରେ ରାଜାଙ୍କର ମୋଫତମଲ୍ କଥା ମନେପଡ଼ିଲା। ସେ କହିଲେ, "ଯାଇ ଦେଖେ, ମୋଫତମଲର ଅବସ୍ଥା କିପରି ଅଛି। ସିପାହୀମାନଙ୍କ ଗୋଇଠା, ବିଧା ମାଡ଼ରେ ଦରମରା ହୋଇ ଯିବଣି।" କିନ୍ତୁ ଏ କ'ଣ ! ଚେହେରାଟା ବେଶ୍ ଡଉଲଡାଉଲ। ପେଟଟା ବଢ଼ିଗଲାଣି। ସିପାହୀମାନଙ୍କଠାରୁ ସମ୍ମାନ ପାଉଛି। ବିସ୍ମିତ ହୋଇ ଚାହିଁଲେ। ଏ ଲୋକଟାକୁ ଆଉ ପାରିହେବନି। ଯଦି ଏହାକୁ ମୋ ପାଖରେ ରଖେ, ତେବେ ପୂରା ସାବାଡ଼ ହୋଇଯିବ। ରାଜା ମୋଫତମଲକୁ କହିଲେ, "କାଲିଠାରୁ ତୁମେ ମୋ ଶୟନକକ୍ଷ ଦ୍ୱାରରକ୍ଷକ ସହ ପାକଶାଳାର ଦାୟିତ୍ୱରେ ବି ରହିବ। ଯଦି କାମରେ ଅବହେଳା କର, ତୁମର ମୁଣ୍ଡକାଟ ହେବ।" ଏହା ଶୁଣି ମୋଫତମଲ୍ ମନେ ମନେ ହସି କହିଲା, "ହଜୁର ! ମୁଁ ଆପଣଙ୍କର ଦାସାନୁଦାସ। ଆପଣଙ୍କର ଆଦେଶ ମୋର ଶିରୋଧାର୍ଯ୍ୟ।"

ତା'ପରଦିନ ମୋଫଂତମଲ ତା'ର୍ ତରାଜୁକୁ ଧରି ନୂଆ କାମରେ ଯୋଗ ଦେଲା । ଯେତେବେଳେ ଝାଡୁଦାର ସକାଳୁ ରାଜାଙ୍କର ଶୟନକକ୍ଷ ସଫା କରି ମଇଳାକୁ ନେଇ ବାହାରକୁ ଆସିଲା, ମୋଫଂତମଲ ଆଦେଶ ଦେବା ଢଙ୍ଗରେ କହିଲା, "ରୁହ, ଆଗେ ସବୁ ମଇଳାକୁ ଏ ତରାଜୁରେ ପକା । ମୁଁ ଦେଖେ ଏହା ଅଧସେରରେ ହେଉଛି କି ନାହିଁ।" ଓଜନ ପରେ ଦେଖାଗଲା କମ୍ ହେଉଛି।



ମୋଫଂତମଲ କହିଲା, "ତୁମେ କାମରେ ଡିଲା କରୁଛ। ଆଉଥରେ ସଫା କର।" ଏଥର ଓଜନରେ ଅଳ୍ପ କିଛି କମିଲା। ମୋଫଂତମଲ କହିଲା, "ଖବରଦାର ! ଠିକ୍ ଠିକ୍ କାମ କର, ନଚେତ ରାଜାଙ୍କୁ ଜଣାଇଲେ ତୁମକୁ କଠିନ ଦଣ୍ଡ ମିଳିବ।"

ଏହା ଶୁଣି ଝାଡୁଦାର ତଟସ୍ଥ ହୋଇ କାନ୍ଦ କାନ୍ଦ ହୋଇ ମୋଫଂତମଲ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା। କହିଲା, "ମୁଁ ଆପଣଙ୍କର ସେବକ। ମୋତେ କ୍ଷମା କରନ୍ତୁ। ମୁଁ ଆପଣଙ୍କର ସବୁ ସେବା କରିବି।" ସାଙ୍ଗେ ସାଙ୍ଗେ ଯାଇ ଗରମ ପୁରି, ତରକାରି, ହାଲୁଆ, ମିଠା ଆଣି ଯୋଗାଇଦେଲା। ମୋଫଂତମଲ ଏସବୁ ଆନନ୍ଦରେ ଖାଇଲାବେଳେ, ଝାଡୁଦାର ତା'ର୍ ପାଦସେବାରେ ଲାଗିଗଲା। ସେଠାରୁ ମୋଫଂତମଲ ଉଠି ପାକଶାଳାକୁ ଯାଇ ମୁଖ୍ୟ ରାନ୍ଧୁଣିଆକୁ କହିଲା, "ଖବରଦାର, ତୁମେ ଭଣ୍ଡାର ଘରୁ ଭଲ ଭଲ ଜିନିଷ ଆଣି ବାଟମାରଣା କରୁଛ। ରାନ୍ଧିବାରେ କମ୍ ସାମଗ୍ରୀ ବ୍ୟବହାର କରୁଛ। ଏଣିକି ଭଣ୍ଡାରଘରୁ ଯାହା ଆଣିବ, ମୁଁ ତାକୁ ଆଗ ଓଜନ କରିବି ଏବଂ ରନ୍ଧା ସରିବା ପରେ ସେସବୁକୁ ମଧ୍ୟ ଏଇ ତରାଜୁରେ ଓଜନ କରିବି। କମ୍ ହେଲେ ରାଜାଙ୍କୁ ରିପୋର୍ଟ କରିବି।"

ସେମାନେ ସବୁ ଭୟରେ ଛାନିଆ ତରତର ହୋଇ ରାଜାଙ୍କ ପାଇଁ ରନ୍ଧା ଭଲ ଭଲ ଯେତେ ଖାଦ୍ୟ ଆଗ ମୋଫଂତମଲକୁ ଖାଇବାକୁ ଦେଇ ଅନୁରୋଧ କଲେ, "ଆଜ୍ଞା, ଏସବୁ ଯେପରି ରାଜାଙ୍କ କାନକୁ ନ ଯାଏ। ଆପଣଙ୍କ ସେବାରେ ଆମେ ତ୍ରୁଟି କରିବୁ ନାହିଁ।" ମୋଫଂତମଲ ଆନନ୍ଦରେ ରାଜକୀୟ ଭୋଜନ ଶେଷ କରି ଆଗେଇ ଚାଲିଲା। ଏଣିକି ଆହୁରି ଆରାମରେ ରହିଲା। ଆଉ ଚିନ୍ତା କ'ଣ ?

ଦିନେ ରାଜାଙ୍କର ମୋଫଂତମଲ ଚେହେରା ନଜରରେ ପଡ଼ିଲା। ସେ ଆଶ୍ଚର୍ଯ୍ୟ ହୋଇ ଏହାର ଭିତିରି ରହସ୍ୟ ତାକୁ ପଚାରିଲେ। ଅଭୟ ଦେଇ କହିଲେ-- ସତ କଥା କହିଲେ ତା'ର୍ କିଛି କ୍ଷତି ନ କରି ପୁରସ୍କାର ଦେବେ। ମୋଫଂତମଲ୍ କହିଲା--

"ଏଇ ତରାଜୁଟି ମୋର ବଳ ଏବଂ ନାମକୁମାତ୍ର। ମୋର ବୁଦ୍ଧି ଓ ଚତୁରପଣିଆରୁ ମୁଁ ମୋର ଖାଦ୍ୟ ବିନା ପରିଶ୍ରମରେ ଯୋଗାଡ଼ କରୁଛି। କ୍ଷମା କଲେ ସବୁକଥା ଖୋଲି କହିବି।" ରାଜା କହିଲେ, "ନିର୍ଭୟରେ ଖୋଲି କୁହ।" ମୋଫଂତଲାଲ କହିଲା, "ଏ ରାଜ୍ୟରେ ବହୁତ

ଭ୍ରଷ୍ଟାଚାରୀ, ଅସାଧୁ କର୍ମଚାରୀ ଅଛନ୍ତି। ସେମାନଙ୍କୁ ସାବାଡ଼ କରିବାକୁ ହେଲେ ଟିକିଏ ଧମକ ଚମକ ଓ ଭୟ ଦେଖାଇ ଠିକ୍ ବାଟକୁ ଆଣିବା ସହ ଆପଣଙ୍କ କାନକୁ ଏସବୁ ନ ନେଇ ଏଇ ତରାଜୁ ମାଧ୍ୟମରେ ମୋର ଦୈନିକ ଆହାର ଯୋଗାଡ଼ କରେ। ଆପଣ ତ ଜାଣନ୍ତି ମୁଁ ଟିକେ ଖାଦ୍ୟଲୋଭୀ ।''

ରାଜା ତା'ର ବୁଦ୍ଧିକୁ ତାରିଫ୍ କରି ରାଜ୍ୟର ଦୁର୍ନୀତି ନିବାରଣ ମୁଖ୍ୟ ଭାବେ ନିଯୁକ୍ତି ଦେଲେ। ମୋଫତମଲ ଏ ପଦବୀ ପାଇ ମହାଖୁସ୍। ପଦବୀର କ୍ଷମତା ବଳରେ ରାଜ୍ୟର ଯେତେ ଅସାଧୁ କର୍ମଚାରୀ ଥିଲେ, ସେମାନଙ୍କୁ ଧରି କଠୋର ଦଣ୍ଡ ଦେବାରୁ ରାଜକୋଷକୁ ବହୁତ ଧନ ଆସିଲା। ମୋଫତମଲ ରାଜାଙ୍କର ଅତି ପ୍ରିୟ ଓ ବିଶ୍ୱସ୍ତ ରାଜକର୍ମଚାରୀ ରୂପେ ଆଦର ପାଇଲା। ମୋଫତମଲ ନିଜ ଚତୁରତା ଓ ବୁଦ୍ଧିମତ୍ତାରୁ ବଡ଼ ପଦବୀରେ କାମ କଲେ ମଧ୍ୟ ତା'ର ପ୍ରିୟ ତରାଜୁକୁ ଛାଡ଼ି ପାରି ନ ଥିଲା।

ଅତଏବ, ଆମ ରାଜ୍ୟ ଓ ଦେଶରେ ବିବିଧ ପ୍ରକାର ଭ୍ରଷ୍ଟାଚାର ଯେପରି ଭାବରେ ଚରମ ସୀମାରେ ପହଞ୍ଚିଲାଣି, ଏହାକୁ ଦୃଢ଼ହସ୍ତରେ ଦମନ କରିବା ପାଇଁ ଶାସକଗୋଷ୍ଠୀ କଠୋର ମନୋବୃତ୍ତି ପୋଷଣ କରିବା ଆବଶ୍ୟକ।

*ରାଜାବଗିଚା, କଟକ- ୯*

---

**ସା.ଜ୍ଞା. ପରୀକ୍ଷା ଉତ୍ତର**- ୧- ୧୯୯୪, ୨- ସିକିମ୍, ୩- ୧୫୬୮, ୪- ଏନ୍.ସି.ସି.(N.C.C) , ୫- ୧୯୭୭, ୬- ବାଟ୍, ୭- କ୍ରିକେଟ୍, ୮- କେରଳର ତିରୁଅନନ୍ତପୁରମ୍, ୯- People for Ethical Treatment of Animals., ୧୦- ସିହାବ୍ ଘନିମ୍ ।

# ବରଫ ଜଳରେ ସ୍ତନ୍ୟପାୟୀ ସାମୁଦ୍ରିକ ପ୍ରାଣୀ ବଞ୍ଚନ୍ତି କିପରି ?

ଶ୍ରୀ ହଂସନାଥ ମୁଦୁଲି

କୁନା ବାପାଙ୍କୁ ଡାକି ଡାକି ଦୌଡ଼ିଗଲା ତାଙ୍କ ବୈଠକଖାନାକୁ। ପଚାରିଲା, ''ବାପା ! ଆଜି ଆମ ଶ୍ରେଣୀରେ ଶିକ୍ଷକ ମେରୁ ଅଞ୍ଚଳ ବିଷୟରେ ପଢ଼ାଉଥିଲେ। ସେ କହିଲେ ଯେ ମେରୁ ଅଞ୍ଚଳରେ ସମୁଦ୍ର ପାଣି ଖୁବ୍ ଥଣ୍ଡା ଏବଂ ବରଫ ରୂପରେ ହିଁ ରହିଥାଏ। ତା'ବ୍ୟତୀତ ମେରୁ ଅଞ୍ଚଳରୁ ଦୂରରେ ବି ଅନେକ ସ୍ଥାନରେ ପାଣି ବରଫଭଳିଆ ଥଣ୍ଡା ଥାଏ ।''

କୁନା ମୁହଁକୁ ଚାହିଁ ବାପା କହିଲେ, ''ହଁ, ଠିକ୍ କଥା।''

କୁନା ବାପାଙ୍କ ପାଖକୁ ଆଉ ଟିକିଏ ଲାଗିଯାଇ ପଚାରିଲା, ''ତା'ହେଲେ ତ ସମୁଦ୍ରରେ ଥିବା ଅନେକ ପ୍ରକାର ମାଛ ଯଥା-- ତିମି, ଓ୍ୱାଲ୍ରସ୍, ସିନ୍ଧୁଘୋଟକ, ସିଲ୍ ଆଦି ସେ ଅଞ୍ଚଳରେ ପଶୁପଶୁ ବରଫମିଶା ପାଣିରେ ଥଣ୍ଡା ହୋଇ ମରିଯିବେ।''



ୱାଲ୍ରସ୍

ବାପା କୁନା ମୁହଁକୁ ଆଉ ଟିକିଏ ସ୍ନେହରେ ଚାହିଁ ଉତ୍ତରଦେଲେ, "ତୁ ଗୋଟିଏ ଠିକ୍ ପ୍ରଶ୍ନ ପଚାରିଛୁ । ଯଦିଓ ମେରୁ ଅଞ୍ଚଳରେ ପାଣି ବରଫରେ ପରିପୂର୍ଣ୍ଣ ଓ ଅନ୍ୟାନ୍ୟ ଅଞ୍ଚଳରେ ପାଣି ଖୁବ୍ ଥଣ୍ଡା; ତଥାପି ପ୍ରକୃତି ସବୁ ପରିସ୍ଥିତି ପାଇଁ ଦରକାର ଅନୁସାରେ ବ୍ୟବସ୍ଥା ବି କରିଛି, ଯେପରିକି ସେଠାରେ ବାସ କରୁଥିବା ପ୍ରାଣୀମାନେ ବିଶେଷ କରି ତିମି, ଓ୍ୱାଲ୍‌ରସ୍, ସିନ୍ଧୁଘୋଟକ ଆଦି ଜଳଚର ସ୍ତନ୍ୟପାୟୀ ଜୀବମାନେ ପରିସ୍ଥିତି ସହ ଖାପ୍ ଖୁଆଇ ପାରିବେ ।"

ସେ ପୁଣି କହିଲେ-- ସେହିପରି ଜୀବମାନେ ଏତେ ଥଣ୍ଡା ପାଣିରେ କିପରି ବଞ୍ଚିରୁହନ୍ତି, ସେ ବିଷୟରେ ମୁଁ ଖୁବ୍ ସଂକ୍ଷେପରେ କିଛି କହୁଛି ଶୁଣ୍ ।"

ସିନ୍ଧୁ-ଘୋଟକ

ତିମି, ଓ୍ୱାଲ୍‌ରସ୍, ସିନ୍ଧୁଘୋଟକ, ସିଲ୍ ଆଦି ମାଛ ବା ଜୀବମାନେ ସ୍ତନ୍ୟପାୟୀ । ସ୍ତନ୍ୟପାୟୀ ପ୍ରାଣୀଗୁଡ଼ିକ ସାଧାରଣତଃ ଉଷ୍ଣ ରକ୍ତବିଶିଷ୍ଟ । ସେମାନେ ସମୁଦ୍ର ଭିତରେ ବାସ କରନ୍ତି ଏବଂ ପୃଥିବୀର ପ୍ରାୟ ସବୁ ଅଞ୍ଚଳରେ ଦେଖାଯାଇଥା'ନ୍ତି । ତୋର ମନେଥିବ, ମୁଁ ତତେ ଥରେ କହିଥିଲି ଯେ ସ୍ତନ୍ୟପାୟୀ ପ୍ରାଣୀ ବା ଉଷ୍ଣରକ୍ତ ବିଶିଷ୍ଟ ପ୍ରାଣୀମାନେ ନିଜର ରକ୍ତର ତାପମାତ୍ରା ଏକ ନିର୍ଦ୍ଦିଷ୍ଟ ଉତ୍ତାପରେ ସ୍ଥିର ପ୍ରାୟ ରଖିପାରନ୍ତି । ଏହା ପ୍ରକୃତିର ବ୍ୟବସ୍ଥା ଅନୁଯାୟୀ ତାଙ୍କର ଶାରୀରିକ ଗଠନ ଏବଂ ପରିସ୍ଥିତି ସହିତ ନିଜକୁ ଖାପ୍ ଖୁଆଇବା ବ୍ୟବହାର ଦ୍ୱାରା ସମ୍ଭବ ହୋଇଥାଏ ।

ପ୍ରକୃତିର ବ୍ୟବସ୍ଥା ଅନୁଯାୟୀ ତାଙ୍କ ଶରୀରର ଉତ୍ତାପ ସୁରକ୍ଷିତ ରହିବା ପାଇଁ ବିଭିନ୍ନ ପ୍ରକାରର ଆବରଣ ବି ରହିଥାଏ । ଯେପରିକି ଲୋମ, ଚର୍ବି, କାତି ଆଦି ଦେହ ଉପରେ ଏବଂ ଚର୍ମ ଉପରେ ବା ଭିତରେ ରହିଥାଏ ଏବଂ ଶରୀରର ଉତ୍ତାପକୁ ସୁରକ୍ଷିତ ରଖିବାରେ ସାହାଯ୍ୟ କରିଥାଏ । ଏହାଦ୍ୱାରା ଶରୀରର ଭିତରର ଉତ୍ତାପ ବାହାରକୁ ଯାଇପାରେ ନାହିଁ କି ବାହାରର ଉତ୍ତାପ ଶରୀରରେ ଭିତରକୁ ପ୍ରବେଶ କରିପାରେ ନାହିଁ । ଫଳତଃ ଶରୀରର ତାପମାତ୍ରା ସ୍ଥିରପ୍ରାୟ ରହିଥାଏ ।

ତା' ବ୍ୟତୀତ ଏହିପରି ପ୍ରାଣୀମାନେ ବି ପାଣିର ତାପମାତ୍ରାର କମ୍‌ବେଶୀକୁ ଅନୁଭବ କରିପାରି ସ୍ଥାନ ବି ପରିବର୍ତ୍ତନ କରିନିଅନ୍ତି ଅନେକ ସମୟରେ । ଯଥା-- ଶୀତଦିନେ ଅତ୍ୟଧିକ ଥଣ୍ଡା ହେଲେ ମେରୁ ଅଞ୍ଚଳରେ ଅନେକ ପ୍ରାଣୀ ଅପେକ୍ଷାକୃତ ଗରମ ଅଞ୍ଚଳକୁ ଚାଲିଯାଆନ୍ତି ଏବଂ ଗ୍ରୀଷ୍ମ ଦିନେ ପୁଣି ବିପରୀତ ଦିଗରେ ଗତି କରିଥାନ୍ତି । ଏହିପରି ଭାବରେ ସେମାନେ ନିଜକୁ ସୁରକ୍ଷିତ ରଖିପାରନ୍ତି ।

ବାପାଙ୍କ ମୁହଁରୁ ଏତେ କଥା ଶୁଣି ସାରି ଖୁବ୍ ଖୁସି ହୋଇଯାଇ କୁନା କହିଲା, "ହଁ, ବାପା ଏଥର ମୁଁ ସବୁ ବୁଝିଗଲି । ଶ୍ରେଣୀରେ ଗୁରୁଜୀ ଯଦି କିଛି ପ୍ରଶ୍ନ କରନ୍ତି, ମୁଁ ଚଟାପଟ୍ ଉତ୍ତର ଦେଇପାରିବି ।"

*ଖଣ୍ଡଗିରି (ଢୁମଢୁମା-କ), ଭୁବନେଶ୍ୱର- ୭୫୧୦୩୦*

# ଲୋକା ଏବେ ଖୁସିରେ ଚଳିଲା

ଡକ୍ଟର ହେମନ୍ତ କୁମାର ଛୋଟରାୟ୍

ଗାଁ'ଟା ସାରା ଲୋକ ପରିଶ୍ରମୀ । କେହି ଅଳସୁଆ ନୁହନ୍ତି । କେବଳ 'ଲୋକା'କୁ ଛାଡ଼ି ଆଉ ସମସ୍ତେ ସକାଳ ହେଲେ ଯିଏ ଯାହା କାମରେ ବାହାରି ପଡ଼ନ୍ତି । ପରିବାର ଚଳାଇବା ପାଇଁ କିଛି କାମ କରିବା ସମସ୍ତଙ୍କର ଲକ୍ଷ୍ୟ; କିନ୍ତୁ ଲୋକା ଖାଲି ବସିରହେ । ବନ୍ଧୁବାନ୍ଧବ, ଭାଇ, କୁଟୁମ୍ବ ଯିଏ ଯାହା କହିଲେ ଶୁଣେନାହିଁ । ତା'ର ଇଚ୍ଛା ପରିଶ୍ରମ ନ କରି କେମିତି ଧନୀ ହୁଅନ୍ତା । ସେଥିପାଇଁ ସେ ଭଗବାନଙ୍କ ଉପରେ ଅଭିମାନ କରେ । ରାଗିକରି କହେ, "ଭଗବାନ କେମିତି ମଣିଷ କେଜାଣି, ମୋ ଡାକ ଜମା ଶୁଣୁନାହାନ୍ତି । ମୁଁ ଘରେ ଥିଲାବେଳେ କେତେଗୁଡ଼ିଏ ସୁନାମୋହର ଆଣି ଅଜାଡ଼ି ଦିଅନ୍ତେନି । ଫଳରେ ଧନୀ ହୋଇ ଯାଆନ୍ତି ଓ ଆରାମରେ ବସିରହି ମୋ ଦିନଗୁଡ଼ାକ କଟିଯାଆନ୍ତା । ଏ ଗାଁ ଲୋକଙ୍କ ଭଳି ପୋକମାଛି ହୋଇ ଖଟିବାକୁ ପଡ଼ନ୍ତା ନାହିଁ ।"

ମଣିଷ ଯାହା ଭାବେ, ତାହା ପାଏନାହିଁ । ମଣିଷ ନିଜର ପେଟ ପୋଷିବା ପାଇଁ କେବଳ ଭଗବାନଙ୍କ ଉପରେ ନିର୍ଭର କରିବା ଉଚିତ ନୁହେଁ-- ଏକଥା ଲୋକା ଜାଣି ପାରେନାହିଁ । ଏମିତି ଦିନ ପରେ ଦିନ ବିତାଏ । ଏପରିକି ବାପାଙ୍କ ଅମଳରୁ ଥିବା ଜମିକୁ ଚାଷ କରିବାକୁ ମଧ୍ୟ ଚାହେଁନାହିଁ । ସବୁଦିନ ସମାନ ଯାଏନାହିଁ । ତା'ର ପରିବାର ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଘରକୁ ସ୍ତ୍ରୀ ଆସିଲା । ପିଲାଛୁଆ ଜନ୍ମ ହେଲେ । ପରିବାରର ସଂଖ୍ୟା ବଢ଼ି ଚାଲିଲା । ଭାଇମାନେ ନିଜ ଅର୍ଜିତ ଧନରୁ କିଛି ଦେଇ ଲୋକାକୁ ଚଳାଇ ଆସୁଥିଲେ । କିନ୍ତୁ ତା'ପରିବାର ପାଇଁ ଏତେ ଧନ ଦରକାର ହେଲା ଯେ ଭାଇମାନେ କେହି ଆଉ ସାହାଯ୍ୟ କରିବାକୁ ସଫା ସଫା ମନା କରିଦେଲେ ।

କ'ଣ କରିବ ? ଲୋକା ଗୋଟିଏ ଗଛମୂଳେ ବସି ଭାବୁଥାଏ । କେମିତି ଏ ପରିବାର ଚଳିବ ? ଭଗବାନ୍ ଏତେ ନିଷ୍ଠୁର । ଏ ଯାଏଁ ତା'ଘରକୁ ସୁନାମୋହର କିଛି ଚାଳବାଟେ ପକାଇ ଦେଲେନାହିଁ । ସେତକ ହୋଇଥିଲେ ସେ ଜୀବନସାରା ଖୁସିରେ ଚଳି ଯାଇପାରନ୍ତା । ରାଗ ଆଉ ଅଭିମାନରେ ବସିଥାଏ । ଏତିକିବେଳେ ସେହି ବାଟରେ ଜଣେ ବାଟୋଇ ଯାଉଥିଲେ । ଲୋକା ବସି ରହିଥିବା ଦେଖି ତା' ନିକଟକୁ ଗଲେ ।



କିଛି ସମୟ ପରେ ପଚାରିଲେ, "ଭାଇ ଏଠି ଏମିତି ବସି ରହିଛ କାହିଁକି ?" ତୁମର କ'ଣ କିଛି କାମ ନାହି ଁ?" ଲୋକା ବାଟୋଇକୁ ଚାହିଁ କହିଲା, "ମୁଁ ଭଗବାନଙ୍କ ଉପରେ ଅଭିମାନ କରି ବସିଛି । ସେ କାହିଁକି ମୋତେ ଗରିବ କଲେ ? ଅନ୍ୟ ସମସ୍ତଙ୍କୁ ଧନୀ କରିଦେଲେ । ସମସ୍ତେ ଖୁସିରେ ଚଳୁଛନ୍ତି । ଆଉ ମୁଁ ପରିବାର ଚଳାଇ ପାରୁନାହିଁ ।"

ବାଟୋଇ ପଚାରିଲେ, "କାହିଁକି, ତମେ କ'ଣ କୌଣସି ରୋଗବ୍ୟାଧିରେ ପଡ଼ିଛ କି ?" ଲୋକା ରାଗିଯାଇ କହିଲା, "ତମେ କ'ଣ ମତେ ଦେଖି ଜାଣି ପାରୁନାହଁ ? ମୋ ଚେହେରା କ'ଣ ରୋଗିଣା ପରି ଜଣାଯାଉଛି ?" ବାଟୋଇ ଏହା ଶୁଣି ପଚାରିଲେ, "ତେବେ ଅସୁବିଧା ରହିଲା କେଉଁଠି ?"

"ସେଇ କଥା ତ ମୁଁ କହୁଛି । ଭଗବାନଙ୍କୁ ଯେତେ ପ୍ରାର୍ଥନା କଲେ ମଧ୍ୟ ସେ ମୋ ଘରେ କିଛି ସୁନାମୋହର ଢାଳି ଦେଉନାହାନ୍ତି । କିଛି ସୁନାମୋହର ପାଇଗଲେ ମୁଁ ଖୁସିରେ ଜୀବନସାରା ଚଳି ଯାଇପାରନ୍ତି ।" ଲୋକା ଉତ୍ତରଦେଲା ।

ବାଟୋଇଙ୍କ ମୁଣ୍ଡରେ ଗୋଟିଏ ବୁଦ୍ଧି ଜୁଟିଲା । ସେ ଲୋକାକୁ ଶିକ୍ଷା ଦେବା ପାଇଁ ଚାହିଁଲେ । କହିଲେ, "ମୁଁ ଜଣେ ସାଧବ । ମୋ ଥଳିରେ ବହୁ ସୁନାମୋହର ଅଛି । ମୁଁ ସେସବୁ ତୁମକୁ ଦେଇ ଦେବାକୁ ଚାହେଁ । କିନ୍ତୁ ପ୍ରତିବଦଳରେ ମୁଁ ଯାହା ମାଗିବି, ମୋତେ ତୁମେ ଦେବାକୁ ପଡ଼ିବ ।" ଲୋକା ଖୁସିରେ ହଁ ଭରିଲା । ସହଜରେ ସୁନାମୋହର ମିଳିଗଲେ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ । ପଚାରିଲା, "କୁହ, ପ୍ରତିବଦଳରେ ତୁମେ କ'ଣ ଚାହଁ ?"

ବାଟୋଇ କହିଲେ, "ମୋତେ ତୁମର ଦୁଇ ହାତ ହାଣି ଦେଇଦେଲେ ମୁଁ ତୁମକୁ ପଚାଶଟି ସୁନାମୋହର ଦେବି । ଦୁଇ ଗୋଡ଼ ହାଣି ଦେଇଦେଲେ ଆଉ ପଚାଶଟି ସୁନାମୋହର ଦେବି । ଶହେ ସୁନାମୋହର ନେଇ ତୁମେ ଓ ତୁମ ପରିବାର ବର୍ଷ ବର୍ଷ ଧରି ଖୁସିରେ ଚଳିଯିବ ।"

ଏହାଶୁଣି ଭୀଷଣ ରାଗିଗଲା ଲୋକା, "ତୁମେ ତା'ହେଲେ ଶହେ ସୁନାମୋହର ବଦଳରେ ମତେ ପଙ୍ଗୁ କରିଦେବାକୁ ଚାହୁଁଛ?"

ବାଟୋଇ କହିଲା, "ହଁ, ସତକଥା । ଏବେ ହାତଗୋଡ଼ ଥାଇ ତମେ କ'ଣ ପଙ୍ଗୁ ନୁହଁ କି ? ବସିରହି ଯିଏ ଭଗବାନଙ୍କଠାରୁ ସୁନାମୋହର ଚାହୁଁଛି, ସିଏ ପଙ୍ଗୁ ନୁହଁ ତ ଆଉ କ'ଣ ? ହାତଗୋଡ଼ ଥାଇ ବିନାଶ୍ରମରେ କେହି ଏପରି ଚାହେଁନାହିଁ । ଭଗବାନ ଆଉ କ'ଣ ଦେଇଥା'ନ୍ତେ ? ତୁମକୁ ଏଭଳି ସୁସ୍ଥସବଳ ଦେହ ଦେଇଛନ୍ତି । ଶକ୍ତ ହାତଗୋଡ଼ ଦେଇଛନ୍ତି । ଏହାରି ବଦଳରେ ତୁମେ କିଛି ଶ୍ରମ କରି ପେଟ ପୋଷି ପାରିବ; ଅଥଚ ଏହା ନ କରି ତୁମେ ବସିରହିଛ । ଦେଖୁଛ, ମୁଁ କେମିତି ଏ ସହରରୁ ସେ ସହର, ଏ ଗାଁ'ରୁ ସେ ଗାଁ ବୁଲୁଛି ନିଜର ଜୀବିକା ପାଇଁ । ତୁମେ ଆଜିଠୁ ଆଉ ବସି ନ ରହି କିଛି ଶ୍ରମ କରିବାକୁ ଆରମ୍ଭ କର । ଦେଖିବ ତୁମର ଦୁଃଖ ରହିବ ନାହିଁ ।"

ଲୋକା ମନକୁ କଥାଟା ପୂରା ଛୁଇଁଲା । ଅଳସୁଆ ହୋଇ ବସି ରହିବା ଫଳରେ ସେ ଯେଉଁ ଭୁଲ୍ କରିଛି, ସେଥିପାଇଁ ଅନୁତାପ କଲା । କାଳବିଳମ୍ବ ନ କରି ବାପ ଅମଳରୁ ଥିବା ବିଲବାଡ଼ିରେ ଲାଗି ସୁନାର ଫସଲ ଫଳେଇଲା । ସମୟ ବଳିଲେ ଛୋଟମୋଟ ବେପାର ବଣିଜ ମଧ୍ୟ କଲା । ଏବେ ଲୋକା ନିଜେ ଖୁସିରେ ଚଳି ତା' ପରିବାରକୁ ମଧ୍ୟ ଖୁସିରେ ଚଳାଉଛି । ଗାଁ ଲୋକମାନେ ଏହା ଦେଖି କାବା ହେଲେ ।

*ନାଗାବଗିଚା, ପ୍ରଥମ ଗଳି, ମଧୁବନ, ପୁରୀ - ୨*



ସୁନା ଏକମାତ୍ର ଧାତୁ, ଯାହା କଳଙ୍କି ଧରେ-ନାହିଁ । ଏହାକୁ ୧୦୦୦ବର୍ଷ ଯାଏଁ ମାଟିରେ ପୋତି ରଖିଲେ ମଧ୍ୟ ଏଥିରେ କଳଙ୍କି ଧରେନାହିଁ ।



# ମଣିଷ ଶରୀର ସବୁ ପାରିବାର

ଶ୍ରୀ କୃଷ୍ଣ ମିଶ୍ର

ହାତ ଲଗେଇଲେ ଅମଳ ଦିଅଇ
ମଟାଳ ମାଟି
ଗୋଡ଼ ବଢ଼େଇଲେ ଚଉଦ ଭୁବନ
ଲାଗେ ହେଇଟି ॥
ଚେଇଁ ଶୋଇଥିଲେ ସବୁ ଦେଖିପାରେ
ବେନି ନୟନ
ମାପିଚୁପି କୁହ କାଛବାଡ଼ର ବି
ରହିଛି କାନ ॥
କହି ପାରୁଥିଲେ ବୁଲେଇ ବଙ୍କେଇ
ମଧୁର କଥା
ଶତ୍ରୁ ବଶ କରି ହୋଇଯାଇ ହୁଏ
ଜଗତଜିତା ॥
ମୁଣ୍ଡ ଖେଲେଇଲେ ସିଂହକୁ ବିନାଶେ
ଚତୁର ଶଶା
ମନ ଯା'ର ଦୃଢ଼ ଭେଦି ଯାଇପାରେ
ସକଳ ଦିଶା ॥
ଅଙ୍ଗପ୍ରତ୍ୟଙ୍ଗକୁ ଲଗେଇ ଜାଣେ ଯେ
ଲୋକରେ ଗଣା
ଦୁନିଆରେ ତାକୁ ଅସମ୍ଭବ କିଛି
ପଡ଼େନି ଜଣା ॥
ମଣିଷ ଶରୀର ସବୁ ପାରିବାର
ଦିଅନି ଡିଲା
କସ୍ତୁରୀ ରହିଛି ଆପଣା ନାଭିରେ
ଚିହ୍ନିଲେ ହେଲା ॥

*ଯୋତ, ଅଲଣାହାଟ, ଜଗତସିଂହପୁର* ୭୭

---



## ଧନ୍ଦା

ଛଅଟି ଅକ୍ଷରେ ନାମଟି ମୋର
ଦୀନଦୁଃଖୀଙ୍କୁ ମୁଁ କରେ ଉଦ୍ଧାର।
ଚତୁର୍ଥ ଷଷ୍ଠକୁ ମିଶାଇଦେଲେ
ପିଇବା ଅର୍ଥକୁ ବୁଝାଏ ଭଲେ।
ପଞ୍ଚମ ଷଷ୍ଠକୁ ମିଶାଇଦେବ
ଅରଣ୍ୟର ଅନ୍ୟ ନାମ ହୋଇବ।
ଚତୁର୍ଥ, ତୃତୀୟ, ଷଷ୍ଠ ମିଶିବ
ପରିସ୍ରବଣର ଅର୍ଥ ହୋଇବ।
ତୃତୀୟ, ପ୍ରଥମ, ଷଷ୍ଠ ମିଶିବ
ସୂର୍ଯ୍ୟଦେବତାଙ୍କ ନାମ ହୋଇବ।
ପ୍ରଥମ, ତୃତୀୟ, ଷଷ୍ଠ ଅକ୍ଷର
ଏକତ୍ରେ ଅର୍ଥ ହୁଏ 'ପଡ଼ିବା'ର।
ପ୍ରଥମ, ଦ୍ୱିତୀୟ, ବର୍ଣ୍ଣ ମିଶିବ
ପତ୍ନୀର ବୀପରିତ ଅର୍ଥ ହେବ।
ପ୍ରଥମ, ପଞ୍ଚମ, ଷଷ୍ଠ ମିଶିବ
ବାୟୁର ଅନ୍ୟ ନାମ ବୋଲାଇବ।
ମୋର ନାମଟିକୁ ଯିଏ କହିବ
ବୁଦ୍ଧିମାନ ପିଲା ସିଏ ହୋଇବ ।

(ଉତ୍ତର ୪୮ ପୃଷ୍ଠାରେ)

--**ଶ୍ରୀ କଳ୍ପତରୁ ନାୟକ,** ଜେନାପୁର, ଯାଜପୁର

# ମୋ' ପଢ଼ା ବେଳର ଓଡ଼ିଶା

ଶଶୀଭୂଷଣ ରାୟ୍
(ପିତା- କବିବର ରାଧାନାଥ ରାୟ୍)

କଟକ ମିଶନ ହାଇସ୍କୁଲ ପ୍ରତିଷ୍ଠିତ ହେବାର ବୋଧହୁଏ ଦୁଇବର୍ଷ ଉତ୍ତାରୁ ଏଣ୍ଟ୍ରାନସ୍ ଚତୁର୍ଥ ଶ୍ରେଣୀରେ ମୋତେ ନାମ ଲେଖାଇବାକୁ ହେଲା। ତାହା ୧୮୮୬ ସାଲରେ। ମୋର ଚାରିବର୍ଷ ବୟସ ସମୟରୁ ପିତୃଦେବ ଘରେ ପଢ଼ାଇବା ସକାଶେ ଗୃହଶିକ୍ଷକ ନିଯୁକ୍ତ କରିଥିଲେ। କଟକ ନର୍ମାଲ୍ ସ୍କୁଲ ସଂଲଗ୍ନ କଟକ ମଡେଲ୍ ସ୍କୁଲର ଶିକ୍ଷକ ବାବୁ ନଫର ଚନ୍ଦ୍ର ପାଲିତ ଦୁଇବେଳା ଆସି ଇଂରାଜୀ ପଢ଼ାଉଥିଲେ। ଖୋର୍ଦ୍ଧା ଯାଆଁଳା ଗ୍ରାମ ନିବାସୀ ବାବୁ ଦୈତ୍ୟାରୀ ନାୟକ ମୋତେ ଓଡ଼ିଆ ସାହିତ୍ୟ, ଇତିହାସ, ଭୂଗୋଳ ଇତ୍ୟାଦି ପଢ଼ାଇବାକୁ ଆମ୍ଭମାନଙ୍କ ବସାରେ ଅବସ୍ଥାନ କରୁଥିଲେ। ଏହାଙ୍କ ନିକଟରୁ ଅନେକ ବେତ୍ରପ୍ରହାର ଲଭିଅଛି।

ମୁଁ ଭୂଗୋଳ ଓ ଅଙ୍କରେ ବାଲ୍ୟକାଳରୁ ଏପରି ବ୍ୟୁତ୍ପନ୍ନ ହୋଇଥିଲି ଯେ ସେ ସମୟରେ ମୋର ପିତୃଦେବ କଟକ ନର୍ମାଲ୍ ସ୍କୁଲର ଛାତ୍ରବର୍ଗଙ୍କୁ ଆମ୍ଭମାନଙ୍କ ଶେଖବଜାର ବସାକୁ ଡାକି ଆଣି ଭୂଗୋଳ ଓ ଅଙ୍କ ସମ୍ବନ୍ଧୀୟ ଦୁରୂହ ପ୍ରଶ୍ନମାନ ଶିକ୍ଷକଙ୍କ ଦ୍ୱାରା କରାଉଥିଲେ। ଅଧିକାଂଶ ସମୟରେ ମୋର ଉତ୍ତର ସେମାନଙ୍କଠାରୁ ଭଲ ହେଉଥିଲା। ଜମିର ନଳ ଭାଙ୍ଗିବା ପ୍ରଶ୍ନଗୁଡ଼ିକରେ ମୁଁ ଏକପ୍ରକାର ଧୂରନ୍ଧର ଥିଲି। ଏ ସମ୍ବନ୍ଧରେ ଅନେକ ଜଟିଳ ପ୍ରଶ୍ନର ସମାଧାନ କରିଦେଉଥିଲି। ଓଡ଼ିଶାର ଭୂଗୋଳ ସମ୍ବନ୍ଧୀୟ ଜ୍ଞାନ ମୋହର ଜିହ୍ୱାଗ୍ରରେ ଥିଲା। କଟକ ନର୍ମାଲ୍ ସ୍କୁଲର ଜଣେ ଆଠବର୍ଷର ବାଳକ ନିକଟରେ ସେମାନେ ହାରିଯାଇ ନିତାନ୍ତ ଅପ୍ରସ୍ତୁତ ହେଉଥିଲେ।

ଖେଳର ସମୟ ଆମ ଦୁଇଭାଇଙ୍କର ଆଦୌ ନ ଥିଲା। ଅପରାହ୍ଣ ପାଞ୍ଚଟାବେଳେ ମୟୂରଭଞ୍ଜ କୋଠିକୁ ଯାଉ। କୌଣସି କୌଣସି ସମୟରେ ଆମ୍ଭମାନଙ୍କ ଉଦ୍ୟାନରେ ସାନ ସାନ ଫାଳବତା ପୋତି ତହିଁରେ ସୂତା ଗୁଡ଼ାଇ ଟେଲିଗ୍ରାଫ୍ ଖୁଣ୍ଟିର ଅନୁକରଣ କରୁଥିଲୁ। ଦଉଡ଼ାଦଉଡ଼ିଠାରୁ ଆରମ୍ଭ କରି କୌଣସି ଖେଳ ଆମ୍ଭମାନଙ୍କୁ କେହି ଶିଖାଇନାହିଁ।

ସେ କାଳରେ ଆମ୍ଭମାନଙ୍କର ପ୍ରଥମ ଇଂରାଜୀ ଶିକ୍ଷା ନିମ୍ନାଙ୍କିତ ପଦ୍ୟାଂଶ ବଳରେ ହେଉଥିଲା। ଏହା ସେ କାଳର ବଙ୍ଗଳା ପଦ୍ୟାଂଶର ଅନୁବାଦ ବିଶେଷ ଯଥା--

*"ଗଡ୍ ଈଶ୍ୱର, ଲର୍ଡ ଈଶ୍ୱର 'କମ୍' ମାନେ ଆସ*
*ଫାଦର୍ ବାପ, ମଦର ମା, ସିଟ୍ ମାନେ ବସ ॥*
*ବ୍ରଦର ଭାଇ, ସିଷ୍ଟର ଭଉଣୀ, ଫାଦରସିଷ୍ଟର ପିଉସୀ*
*ଫାଦର ଇନ୍ ଲ' ମାନେ ଶ୍ୱଶୁର, ମଦର ସିଷ୍ଟର-ମାଉସୀ*
*ଆଇ ମାନେ ମୁହିଁ, ଇଉ ମାନେ ତୁହି*
*ଅସ୍ ମାନେ ଆମ୍ଭମାନଙ୍କୁ, ଗ୍ରାଉଣ୍ଡ୍ ମାନେ ଭୂଇଁ ॥*
*ଡେ' ମାନେ ଦିନ ଆଉ ନାଇଟ୍ ମାନେ ରାତି*
*ଉଇକ୍ ବୋଲି ସପ୍ତାହ, ରାଇସ୍ ମାନେ ଭାତ ॥*
*ପମ୍ପକିନ୍ ଲାଉକଖାରୁ, କ୍ୟୁକମ୍ବର କାକୁଡ଼ି*
*ମେସେଜ୍ ବାର୍ତ୍ତାକୁ ଜାଣ, ରୋଲିଂ ଗଡ଼ାଗଡ଼ି ॥*

(ଉପସ୍ଥାପନା- ଡକ୍ଟର ଲାବଣ୍ୟ ଚନ୍ଦ୍ର ସାହୁ)

*ଗୁଗୁପାଆଁଚି, ୩୫, ବସନ୍ତ ବିହାର, ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ, ଭୁବନେଶ୍ୱର- ୧୮*

# ଅଯାଚିତ ସାହାଯ୍ୟ

କୌଣସି ଅଜଣା ବ୍ୟକ୍ତିଙ୍କ ପାଖେ କୁଣ୍ଠା ପ୍ରକାଶ ନ କରି ତାଙ୍କର ଅସୁବିଧା ସମୟରେ ଅଯାଚିତ ସାହାଯ୍ୟ ଦେବା ଉତ୍ତମ ମାନବିକତାର ଲକ୍ଷଣ । କିଏ କହିପାରିବ ଏପରି ବ୍ୟବହାର ଅଜଣା ବ୍ୟକ୍ତିର ହୃଦୟକୁ ଛୁଇଁ ନ ପାରିବ ବୋଲି ! ଏ ବିଷୟରେ ଏକ ସତ୍ୟ ଘଟଣାର ଅବତାରଣା କରାଗଲା ।

ଅନେକ ଦିନ ତଳର ଏକ ଘଟଣା । ଆମେରିକାର ଫିଲେଡେଲ୍‌ଫିଆ ସହରରେ ଏକ ବୟସ୍କ ଦମ୍ପତ୍ତି ଗାଡ଼ିରେ ଯାଉଥିବା ସମୟରେ ପ୍ରବଳ ଝଡ଼ବର୍ଷାର ସମ୍ମୁଖୀନ ହେଲେ । ସେଥିରୁ ରକ୍ଷା ପାଇବା ପାଇଁ ଗୋଟିଏ ହୋଟେଲରେ ରାତିଟା କଟାଇବା ପାଇଁ ସ୍ଥିର କଲେ । ପାଖରେ ଥିବା ଏକ ହୋଟେଲରେ ପହଞ୍ଚି ହୋଟେଲ ପରିଚାଳକଙ୍କୁ ଏକ କୋଠରି ଦେବା ପାଇଁ ଅନୁରୋଧ କଲେ । ହୋଟେଲ ପରିଚାଳକ ହସ ହସ ମୁହଁରେ ଦୁଃଖିତ ହୋଇ ଆଉ କିଛି କୋଠରି ଖାଲି ନ ଥିବାର ଜଣାଇଲେ । କାରଣ ସେହି ସହରରେ ସେହିଦିନ ଛଅଟି ଜାଗାରେ ବଡ଼ ସଭା ହେଉଥିବାରୁ ସେମାନଙ୍କ ଦ୍ୱାରା ସବୁ କୋଠରି ସଂରକ୍ଷିତ ହୋଇଯାଇଥିଲା । ପୁନଶ୍ଚ ସେ ଦମ୍ପତ୍ତିଙ୍କୁ କହିଲେ ଯେ ଆପଣ ଯଦି ଚାହାନ୍ତି ମୋ କୋଠରିରେ ରାତ୍ରୀଯାପନ କରିପାରନ୍ତି । ସେଠାରେ ସବୁ ସୁବିଧା ମଧ୍ୟ ଅଛି । ବୟସ୍କ ଦମ୍ପତ୍ତି ଦୋ ଦୋ ପାଞ୍ଚ ହେବା ସମୟରେ ସେ ପୁଣି କହିଲେ ଯେ ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ମୁଁ ଅନ୍ୟ ଜାଗାରେ ରାତ୍ରୀଟି କଟାଇନେବି । ଏକଥା ଶୁଣି ଦମ୍ପତ୍ତିଦ୍ୱୟ ତାଙ୍କର ସମ୍ମତି ଜଣାଇ ପରିଚାଳକଙ୍କ କୋଠରିରେ ରାତ୍ରୀଯାପନ କଲେ ।

ପରଦିନ ସକାଳେ ବୟସ୍କ ଦମ୍ପତ୍ତି ତାଙ୍କର ହୋଟେଲ ବିଲ୍ ପୈଠ କରିବାବେଳେ କହିଲେ, "ତୁମ ଭଳି ଦୟାଳୁ, ବିଚାରବନ୍ତ ହୋଟେଲ ପରିଚାଳକ ମିଳିବେ ନାହିଁ ।" ପରିଚାଳକ ଜଣଙ୍କ ସେମାନଙ୍କୁ କିଛିକ୍ଷଣ ଚାହିଁ ହସିଥିଲେ ଓ ସେହି ତିନିଜଣଙ୍କ ମଧ୍ୟରେ କିଛି ସମୟ ପାଇଁ ସେଠି ବେଶ୍ ଖୁସି ଗପ ହୋଇଥିଲା ।

ଫେରିବା ବାଟରେ ବୟସ୍କ ଦମ୍ପତ୍ତି ଦ୍ୱୟ ଅନୁଭବ କରିଥିଲେ ଯେ ପରିଚାଳକ ଜଣଙ୍କ ଏକ ଉତ୍ତମ ତଥା ସାହାଯ୍ୟକାରୀ ବ୍ୟକ୍ତି । ହୋଟେଲ ପରିଚାଳକ ହେବା ପାଇଁ ଯୋଗ୍ୟ ମଧ୍ୟ ।

ଏଥି ମଧ୍ୟରେ ପ୍ରାୟ ଦୁଇବର୍ଷ ବିତିଗଲା । ଦିନେ ହୋଟେଲର ପରିଚାଳକ ସେହି ବୟସ୍କ ବ୍ୟକ୍ତିଙ୍କଠାରୁ ଗୋଟିଏ ଚିଠି ପାଇଲେ, ଯେଉଁଥିରେ ନିୟୁର୍କ ଯିବା-ଆସିବା କରିବା ପାଇଁ ଉଡ଼ାଜାହାଜ ଟିକେଟ୍ ଥିଲା । ସେଇ ବର୍ଷାରାତିର ସେହି ଭଦ୍ରବ୍ୟକ୍ତି ପରିଚାଳକଙ୍କୁ



ଉଇଲିୟମ ଆଲଡ୍ରୋଫ୍ ଆଷ୍ଟର



ଜର୍ଜ. ସି. ବୋଲ୍ଟ

ନିମନ୍ତ୍ରଣ କରିଥିଲେ ତାଙ୍କ ଘରକୁ ଆସିବା ପାଇଁ। ଏହାକୁ ପାଇ ପରିଚାଳକ ଜଣଙ୍କ ଆନନ୍ଦିତ ହେଲେ ଓ ନିୟୁର୍କ ଯାଇ ଭଦ୍ରବ୍ୟକ୍ତିଙ୍କ ଘରେ ପହଞ୍ଚିଲେ। ଭଦ୍ରବ୍ୟକ୍ତିଜଣଙ୍କ ତାଙ୍କୁ ଯଥାବିଧି ସତ୍କାର କରି ନିୟୁର୍କର ପଞ୍ଚମ ଆଭେନ୍ୟୁର ୩୪ ନମ୍ବର ଷ୍ଟ୍ରୀଟ୍‌କୁ ନେଇ ଗୋଟିଏ ବିରାଟ ନୂଆ କୋଠାକୁ ଦେଖାଇଲେ। ବହୁତଳ ବିଶିଷ୍ଟ କୋଠାଟି ନାଲିପଥରରେ ତିଆରି ହୋଇଥିଲା ଓ ଉପରେ ଜଗୁଆଳି ରହିବାର ବ୍ୟବସ୍ଥା ମଧ୍ୟ ଥିଲା। ତାକୁ ଦେଖାଇ ଭଦ୍ରବ୍ୟକ୍ତି କହିଲେ, "ଏହି ହୋଟେଲଟିକୁ ମୁଁ ଆପଣଙ୍କ ପାଇଁ ତିଆରି କରିଛି। ଆପଣ ଏହାର ପରିଚାଳକ ହେବେ।"

ଏତେ ବଡ଼ ହୋଟେଲଟି ଦେଖି ପରିଚାଳକ ସଂଭ୍ରମରେ ପଚାରିଲେ, "ଆପଣ ଥଟ୍ଟା କରୁ ନାହାନ୍ତି ତ ?" ଭଦ୍ରବ୍ୟକ୍ତି ହସିହସି କହିଲେ, "ନା ନା ମୁଁ ଥଟ୍ଟା କରୁନାହିଁ।" ସେହି ଭଦ୍ରବ୍ୟକ୍ତିଙ୍କ ନାମ ଥିଲା ଉଇଲିୟମ୍ ଆଲଡ୍ରୋଫ୍ ଆଷ୍ଟର। ଆଉ ସେ ହୋଟେଲଟିର ନାଁ ଆଲଡ୍ରୋଫ୍ ଆଷ୍ଟୋରିୟା ହୋଟେଲ, ଯାହା କି ପୃଥିବୀର ଅନ୍ୟତମ ସୌଖୀନ୍ ହୋଟେଲ। ସେହି ଯୁବ ପରିଚାଳକଙ୍କ ନାମ ଥିଲା ଜର୍ଜ. ସି. ବୋଲ୍ଟ। ସେ ମନେ ମନେ ଭାବୁଥିଲେ ଏପରି ଘଟଣା ଘଟିଗଲା, ଯେଉଁଥିରେ କି ସେ ଏତେ ବଡ଼ ମର୍ଯ୍ୟାଦାପୂର୍ଣ୍ଣ ହୋଟେଲର ଦାୟିତ୍ୱରେ ରହି ପାରିଲେ।

ଅନୁବାଦ- **ଶ୍ରୀ ମନୋଜ କୁମାର ତ୍ରିପାଠୀ**

**ଭଭଭଭ**



# ଛୋଟ ଭିତରେ ବଡ଼ ଗୁଣ



ଶ୍ରୀ ବାଇଧର ନାୟକ

ପ୍ରଜାପତିଟି ଫୁଲଡାଳରେ ବସି ଗୁଣୁଗୁଣୁ ହୋଇ ଗୀତ ଗାଉଥାଏ। ଫୁଲଗଛ ତଳେ ନାଲି ଗଂଜାକୁକୁଡ଼ା ବସି ପ୍ରଜାପତିର ଗୀତ ଶୁଣୁଥାଏ। ପ୍ରଜାପତିର ଆନନ୍ଦ ଦେଖି ଗଂଜାର ଭାରି ଈର୍ଷା ହେଉଥାଏ। ଗଛତଳୁ ଗଂଜା କହିଲା-- "ରଂଗବେରଂଗରେ ଦେହ ମଜାଇ,
ଗୀତ ଗାଇ ଗାଇ ହେଉ ଫୁଲେଇ।
ଶୁଣିବୁ କି ମୋର ଉଚ୍ଚାଙ୍ଗ ଗୀତ
ଗାଇଲେ ଶୁଭିବ ଯୋଜନ ପଥ।
ତୋ' ଗୀତ ଶୁଭୁଛି କାହାକୁ କହ
ରଂଗିଲା କରିଛୁ ତୋ ଟିକି ଦେହ।"

ପ୍ରଜାପତି ଗଂଜାକୁ ଚାହିଁଲା। ଖୁବ୍ ବଡ଼ ଗଂଜାଟାଏ। ତା ମଥାରେ ନାଲିମୁକୁଟ ଡଳଡଳ ହେଉଛି। ତା'ର ନଖ ବି ଖୁବ୍ ମୁନିଆଁ। ପ୍ରଜାପତି ତାକୁ ଦେଖି ଡରିଗଲା, ହେଲେ ସାହସ ସଂଚାର କରି କହିଲା, "ଗର୍ବ କରିବା ଶିଖିନି। ଫୁଲେଇ ହେବା ବି ଶିଖିନି। ଫୁଲମହୁ ପିଇ ଆନନ୍ଦରେ ଅଛି। କାହା ସାଥେ କଳି କରେନି।"

ଗଂଜା କୁକୁଡ଼ା ନିଜର ବଡ଼ାଣିଆ ଦେଖାଇବା ପାଇଁ ଦି' ଚାରିଟା ଲମ୍ବାରଡ଼ି ଛାଡ଼ିଲା । ତା' ରଡ଼ିରେ ପ୍ରଜାପତିର ଦେହ ଥରି ଉଠିଲା । କୁକୁଡ଼ା ହସି ହସି ପଚାରିଲା, "ମୋ ଗୀତ ଶୁଣିଲୁ ତ?"

ପ୍ରଜାପତି କହିଲା, "ଏଇଟା କ'ଣ ଗୀତ ? ଏଇଟା ଗୋଟାଏ ଭୟଙ୍କର ରଡ଼ି । ଶୁଣିଲେ ଭୟ ଲାଗୁଛି ।"

ଗଂଜା ରାଗିଯାଇ କହିଲା, "ଏତେ ବଡ଼ କଥା କହନା । ତମେ ସବୁ ବଣୁଆ ଜାତି । ବଣରେ ଥାଅ । ମୁଁ ମୋ ମାଲିକର ପକ୍କା ଘରେ ଆନନ୍ଦରେ ରହେ । ମାଲିକ ବି ମୋତେ ଖୁବ୍ ଆଦର କରେ ।"

ପ୍ରଜାପତି ଫିକ୍‌ଫିକ୍ କରି ହସିଦେଲା । ଆଉ କହିଲା--"ତୁମକୁ ଦିନେ ତୁମ ମାଲିକ ମାରିଦେଇ ମାଂସ କରି ଖାଇବ ।"

କୁକୁଡ଼ା କହିଲା,"ମୋ ମାଂସ ମଣିଷର ସେବାରେ ଲାଗୁଛି । ଆଉ ତୁ ମଣିଷର କେଉଁ ସେବା କରୁଛୁ ?"

ପ୍ରଜାପତି କହିଲା--"ମୋ କଥା ଭଲ ଭାବରେ ଶୁଣିବା ପରେ ତୁମେ ଯାହା କହିବ ସହିଯିବି । ମୁଁ ଫୁଲରୁ ମହୁ ପିଇ ଆନନ୍ଦରେ ଅଛି । ଏ ଫୁଲରୁ ସେ ଫୁଲକୁ ଉଡ଼ି ମୁଁ ପରାଗ ସଂଗମ କରୁଛି । ପରାଗ ସଂଗମ ପାଇଁ ଗଛରେ ଫଳ ଧରୁଛି, ଯେଉଁ ଫଳ ତୁମେ ଖାଉଛ ଆଉ ସମଗ୍ର ଜୀବଜଗତ ଖାଇ ବଂଚିଛି ।"

କୁକୁଡ଼ା କହିଲା,"ଏତେ ବଡ଼ କାମ କରୁଛୁ,ହେଲେ ଏତେ ଛୋଟ ହୋଇଛୁ କାହିଁକି ? ମୋ ପରି ବଡ଼ ହେଲୁନି ?" ପ୍ରଜାପତି କହିଲା, "ବଡ଼ ଦେହ ହୋଇ ଲାଭ ନାହିଁ । ବଡ଼ଗୁଣ ଥିଲେ ସମସ୍ତେ ଆଦର କରିବେ । କବିମାନେ ମତେ ନେଇ କେତେ ଗୀତ କବିତା ଲେଖନ୍ତି । ମୋ ଛୋଟ ରଂଗିଲା ଦେହକୁ ଦେଖି ମୁଗ୍ଧ ହୋଇଯା'ନ୍ତି । ତୁମ ଠାରୁ ମୋର ଆଦର ଅନେକ । ତତେ ନେଇ କେଉଁ କବି କେବେ କବିତା ଲେଖିଛି କି ?"

ପ୍ରଜାପତିର କଥା ଶୁଣି କୁକୁଡ଼ା ଭୀଷଣ ରାଗୁଥାଏ, ହେଲେ କିଛି କହି ପାରୁ ନ ଥାଏ । କାରଣ ପ୍ରଜାପତି ଛୋଟ ପ୍ରାଣୀ ହେଲେ ବି ସେ ତା'ଠୁଁ ଅଧିକ ଆଦର ପାଏ । କେବଳ ମାଂସ ଖାଇବା ପାଇଁ ମଣିଷ ତାକୁ ଆଦର କରେ, କିନ୍ତୁ ପ୍ରଜାପତି ସ୍ୱାଧୀନ ।

ଶେଷରେ କୁକୁଡ଼ା କହିଲା--"ପ୍ରଜାପତି ଲୋ......ତୋ ବାଟରେ ତୁ ଚାଲି ଯା । ତୁ ଛୋଟ ହେଲେ ତୁ ମୋ'ଠାରୁ ବଡ଼ । ତୋ ଗୁଣ ପାଇଁ ତତେ ସମସ୍ତେ ଆଦର କରନ୍ତି । ମତେ ମୋ ମାଂସ ପାଇଁ ଲୋକମାନେ ଆଦର କରନ୍ତି । ତୋ ସହିତ କଳି କରି ମୁଁ ଭୁଲ୍ କରିଛି ।"

ପ୍ରଜାପତି ଉଡ଼ି ଯାଇଥିଲା । କୁକୁଡ଼ା ବି ସେଠାରୁ ଅନ୍ୟ ଆଡ଼କୁ ଚାଲିଯାଇଥିଲା ।

ଯିଏ ଯେତେ ବଡ଼ ଦେହ ଧରିଥାଉ, ଗୁଣ ଥିଲେ ଆଦର ମିଳେ । ଗୁଣ ନ ଥାଇ ଯିଏ ଯେତେ ମୋଟା, ଗୋରା ହେଲେ ବି ତା'ର ମୂଲ୍ୟ କିଛି ଥାଏନା ।

*ପରମାନନ୍ଦପୁର, ତିହିଡ଼ି, ଭଦ୍ରକ* ✡✡

---

## କ୍ରୀଡ଼ା କୁଇଜର ଉତ୍ତର

୧ । ହକି ଇଣ୍ଡିଆ ଲିଗ୍, ୨ । ରାଞ୍ଚି ରାଇନୋସ୍, ୩ । ରାହୁଲ୍ ଦ୍ରାଭିଡ୍ ଓ ସୁଶୀଲ୍ କୁମାର, ୪ । ଭାଗ୍ୟଲକ୍ଷ୍ମୀ ବାରିକ, ୫ । କସରତ୍, ୬ । ବକ୍‌ସିଂ, ୭ । ଫୁଟବଲ୍, ୮ । ସୁଇଜରଲାଣ୍ଡ୍, ୯ । ଫୁଟବଲ୍ , ୧୦ । ଟି.ଏମ୍. ଦିଲ୍‌ଶାନ୍, ୧୧ । ଲିଓନେଲ୍ ମେସି୍ ।



# ବୋଉ ହାତ ତରକାରି

ଶ୍ରୀ ନୃସିଂହ ଚରଣ ଆଚାର୍ଯ୍ୟ

ବୋଉ ରାନ୍ଧେ ତିଅଣ
ଦେଇ ଜିରା ଫୁଟଣ
ହାତ ଚାଟି ଭାତ ଖାଉ
ନାନୀ ମୁଁ ଦି ଜଣ ।୧।

ବୋଉ ରାନ୍ଧେ ମହୁର
ଦେଇ ଲଙ୍କା ବେସର
ପାଟି ଜଳେ ଭଲଲାଗେ
ମାଗୁ ଆଉ ଦି'ଥର ।୨।

ବୋଉ କରେ ମଂଜାରାଇ
ସାଥେ ଦହିପଖାଳ
ଥରେ ଯିଏ ଖାଇଥାଏ
ମନେରଖେ ସବୁବେଳ ।୩।

ବୋଉ ଶାଗ ଖରଡ଼ା
ଦେଇ ବଡ଼ି ନଡ଼ିଆ
ପଖାଳ ସହିତ ଲାଗେ
ସିଏ ଭାରି ବଢ଼ିଆ ।୪।

ବୋଉ ମାଛ ତିଅଣ
ବାଟି ଜିରା ରସୁଣ
ଗାଁ ସାରା ଯେ ଖାଇଛି
ଗାଉଅଛି ତା' ଗୁଣ ।୫।

ବୋଉ ହାତ ମଣ୍ଡା ପିଠା
ଡାଲି, କ୍ଷୀରି ପରଶା
ଚିତଉ, ଚକୁଳି ସାଥେ
ପୋଡ଼ପିଠା ଆରିସା ।୬।

ସାନ ଭାଇ ବଗୁଲା
ଥିଲା ବଡ଼ ଚଗଲା
ତାକୁ ଭଲ ଲାଗେ ନାହିଁ
ରୁଷି ଶୁଏ ଏକଲା ।୭।

ବୋଉ ଏବେ ସରଗେ
ଥିବ ବଡ଼ ସରାଗେ
ରନ୍ଧା ତାର ମନେପଡ଼େ
ଝୁରୁ ଆମେ ସରବେ ।୮।

*ସି- ୩୬୪, କୋଏଲ ନଗର, ରାଉରକେଲା- ୭୬୯୦୧୪*



ପଶୁମାନଙ୍କ ମଧ୍ୟରେ ସହଯୋଗ, ମଣିଷ ମଧ୍ୟରେ...!!!



"ପାପୀ ଡାକେ ରାମ ଆଉ ତପୀ ଡାକେ ରାମ
କୁହ ପ୍ରଭୁ କୁହ ତୁମେ କାହା ଭଗବାନ ?"

ଆମ ରାଜ୍ୟ ତଥା ରାଜ୍ୟ ବାହାରେ ଅଜସ୍ର ସାଧୁ, ସନ୍ଥ, ଗୁରୁ ଇତ୍ୟାଦି ଉଭା ହେଉଛନ୍ତି। ସେମାନଙ୍କର ପ୍ରବଚନ ଆମେ ଶୁଣୁଛେ, ଆନନ୍ଦିତ ହେଉଛେ। ତାଙ୍କର ଧାର୍ମିକ ଚିନ୍ତାଧାରା ଆମକୁ ଆକର୍ଷିତ କରୁଛି। ତା'ଭିତରେ କିଏ ଈଶ୍ୱର ଭକ୍ତ, କିଏ ଅଭକ୍ତ, କିଏ ପାପୀ, କିଏ ତପୀ ଜାଣିବା କଷ୍ଟକର।

ପୂର୍ବକାଳରେ ଯେଉଁ ଋଷି, ସାଧୁ, ସନ୍ଥ ଥିଲେ, ସେମାନଙ୍କ ବିଷୟରେ ଆମେ ଶାସ୍ତ୍ର, ପୁରାଣରେ ପଢୁଛେ ଓ ପଢ଼ିଛେ। ସେମାନେ ହିମାଳୟରେ ଅଥବା ନିକାଞ୍ଚନରେ ରହି ତପସ୍ୟା ଦ୍ୱାରା ସିଦ୍ଧିଲାଭ କରିଥିଲେ, ଯେମିତି ବିବେକାନନ୍ଦ, ଶ୍ରୀଅରବିନ୍ଦ ଇତ୍ୟାଦି। ସତ୍ୟର ସନ୍ଧାନରେ ସେମାନେ ନିଜକୁ ସମ୍ପୂର୍ଣ୍ଣ ରୂପେ ସମର୍ପଣ କରିଦେଇଥିଲେ ଈଶ୍ୱରଙ୍କ ନିକଟରେ। ମାତ୍ର ଶ୍ରୀରାମକୃଷ୍ଣ ପରମହଂସଙ୍କ ଉପରେ ଈଶ୍ୱରଙ୍କ କରୁଣା ସ୍ୱତଃପ୍ରବୃତ୍ତ ଝରି ପଡ଼ିଥିଲା। ସେ ତପସ୍ୟା କରି ନ ଥିଲେ। ସେ ନିଜକୁ ମା' କାଳୀଙ୍କ ଭିତରେ ଓ ନିଜ ଭିତରେ ମା' କାଳୀଙ୍କୁ ପାଇଥିଲେ। କେତେ କେତେ ସାଧୁସନ୍ଥଙ୍କର କାର୍ଯ୍ୟାବଳୀ ଆମେ ପଢ଼ିଛେ ! ଆଶ୍ଚର୍ଯ୍ୟ ଲାଗେ।

ଡକାୟତମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଜଣେ ସାଧୁ ଜଙ୍ଗଲରେ ପଡ଼ିଥିଲେ। ତାଙ୍କୁ ଉଦ୍ଧାରକାରୀମାନେ ପଚାରିଲେ, "କିଏ ଆପଣଙ୍କୁ ଏପରି ଲହୁଲୁହାଣ କଲା?" ସେ ଉପରକୁ ଚାହିଁ କହିଲେ, "ସେଇ।" ପୁଣି ସେମାନେ ପ୍ରଶ୍ନ କଲେ, "କିଏ ଉଦ୍ଧାର କଲା?" ସିଏ କହିଲେ, "ଯିଏ ମୋତେ ଏଭଳି ଅବସ୍ଥା କଲା, ସେଇ ଉଦ୍ଧାର କଲା।" କି ଅସୀମ ଭକ୍ତି ସତରେ! ଏହିପ୍ରକାର ସମର୍ପିତ ମହାନ୍ ଆତ୍ମାମାନଙ୍କୁ କିଛି ଦେଖାଯାଏ ନାହିଁ, କେବଳ ଈଶ୍ୱରଙ୍କ ବ୍ୟତୀତ। ଏସବୁ ଭିତରେ ଆମ ଭଳି ମନୁଷ୍ୟମାନଙ୍କର ସ୍ଥାନ କାହିଁ ? ଆମ ଭିତରେ ଈଶ୍ୱରାନୁଭୂତିର ଚିହ୍ନ, ବର୍ଣ୍ଣ ବି ନାହିଁ। କାରଣ ଈଶ୍ୱରାନୁଭୂତି ହେଉଛି ସେହି ଈଶ୍ୱରଙ୍କର କରୁଣା। ତାଙ୍କର କରୁଣା ନ ଥିଲେ ମଣିଷ ତାଙ୍କୁ ଭକ୍ତି ମଧ୍ୟ କରିପାରିବ ନାହିଁ ବୋଲି ମୋର ଧାରଣା। ଆମର ହିନ୍ଦୁ ଧର୍ମର ବିଶ୍ୱାସ ଜନସାଧାରଣଙ୍କ ମଧ୍ୟରେ ଏତେ ତୀବ୍ର ଯେ ଆମେ ଯାହା ଅନ୍ୟାୟ, ଅନୀତି କରୁ ପଛକେ ଠାକୁର ମନ୍ଦିରରେ ଫୁଲ ଚଢ଼ାଇବା, ଭୋଗ ଲାଗି କରିବା, ମନ୍ଦିର ପାଇଁ ଘଣ୍ଟ, ଠାକୁରାଣୀଙ୍କୁ ଶାଢ଼ୀ, ଚିଟା ଇତ୍ୟାଦି ମାନସିକ କରି ଅଭୀଷ୍ଟ ପୂରଣ ପାଇଁ ଭିଡ଼ ଜମାଉ। ଭାବୁନାହିଁ ଯେ ଆମ ଭିତରେ ଏତେ ହିଂସା, ଏତେ ଗର୍ବ ରହିଛି, ଈଶ୍ୱର କିଭଳି ଆମକୁ ଆଶୀର୍ବାଦ ଦେବେ!

ଗୁରୁ, ସାଧୁ, ବାବା ଇତ୍ୟାଦି ସମସ୍ତେ ପ୍ରବଚନ ଦିଅନ୍ତି ଖୁବ୍ ଭକ୍ତି ଭାବରେ। ଆଶ୍ରମ କରନ୍ତି, ସ୍କୁଲ, କଲେଜ ଡାକ୍ତରଖାନା କରନ୍ତି। ଭକ୍ତମାନେ ଏଥିରେ ବେଶ୍ କିଛି ଅର୍ଥ ଉପାର୍ଜନ ମଧ୍ୟ କରନ୍ତି। ଏହି ବାବାମାନଙ୍କ ଠାରେ କେତେ କୁପ୍ରବୃତ୍ତି ଛପି ରହିଥାଏ, ତାହା ଏବେ ଗୋଟି ଗୋଟି ଲୋକଲୋଚନକୁ ଆସୁଛି। ଏବେ ଆମେ ଦେଖିବାକୁ ପାଉଛେ, ଜଣେ ସାଧୁମହାତ୍ମା ଦୁଇପ୍ରକାରର ଅଭିନୟରେ ସିଦ୍ଧହସ୍ତ। ଗୋଟିଏ ସାଧୁବେଶ, ଅନ୍ୟଟି ଅସାଧୁବେଶ। ତାହାଠାରୁ ବରଂ ଚୋର, ଡକାୟତ

ଯଥେଷ୍ଟ ଭଲ। ସେମାନେ ଗୋଟିଏ ପ୍ରକାର ରୂପ ହିଁ ଜଗତକୁ ଦେଖାଇଥା'ନ୍ତି।

ସତ୍‌ପ୍ରେମ ନାମକ ଜଣେ ହତାଶାଭାବାପନ୍ନ ବ୍ୟକ୍ତି କ୍ରୁର୍ ହୋଇ ଉଠିଥିଲେ। ସେ ଶ୍ରୀମାଙ୍କ ନିକଟକୁ ଛୁରୀ ଦେଖାଇ ମାରିବା ପାଇଁ ଆସିଥିଲେ। ଶେଷରେ ମା' ତାଙ୍କ ଭିତରେ ଦେଖିଲେ ଏକ ଦୃଢ଼ ସଂକଳ୍ପର ଲେଲିହାନ ଶିଖା, ଯାହାକି ମଣିଷର ଆଗାମୀ ପରିବର୍ତ୍ତିତ ରୂପ ଅତିମାନବକୁ ରୂପାନ୍ତରିତ ହେବାର ମାଧ୍ୟମ ଭାବେ ସହଯୋଗୀ ହୋଇପାରିବ ବୋଲି ମା' ଜାଣିପାରିଲେ।

ତେଣୁ ବିଶୃଙ୍ଖଳିତ ବ୍ୟକ୍ତିତ୍ୱ ମଧ୍ୟରେ ଏକ ଦୃଢ଼ତା ଥାଏ, ଯାହାକି ଶୀଘ୍ର ପରିବର୍ତ୍ତିତ ହୋଇପାରେ। ଯେମିତି ଦସ୍ୟୁ ରତ୍ନାକରରୁ ହୋଇଥିଲା ବାଲ୍ମିକୀ ରୂପ। ମୋର ଏହାହିଁ ଧାରଣା।

ଆଜିକାର ବାବା, ସାଧୁ, ସନ୍ଥମାନଙ୍କ ମଧ୍ୟରେ ଯେଉଁ ଦ୍ୱୈତରୂପ ଦେଖାଯାଏ, ତାହା ହିଁ ଆମକୁ ସନ୍ଦେହରେ ପକାଏ । ତା'ହେଲେ ଆମେ କ'ଣ କରିବା ? ଈଶ୍ୱରଙ୍କୁ ପ୍ରାର୍ଥନା କରିବା ନାଁ ଈଶ୍ୱରଙ୍କୁ ପାଇବାର ମାଧ୍ୟମ ଭାବରେ ଏହି ପ୍ରକାର ବିଶୃଙ୍ଖଳିତ ସାଧୁମାନଙ୍କୁ ଉପାସନା କରିବା ନା ଗୁରୁ ଭାବେ ଗ୍ରହଣ କରିବା ? ଆମେ ତ ପ୍ରବଳ ଅନ୍ଧବିଶ୍ୱାସୀ । ଏମାନଙ୍କୁ ଛାଡ଼ି ଆମେ ଜୀବନ ନିର୍ବାହ କରିପାରିବା ନାହିଁ।

ଜୋରନ୍ଦାରେ ମୁଁ ଦେଖିଲି ଅଜସ୍ର ବାବାଙ୍କର ପେଣ୍ଠ। ସେମାନେ ପୁଣି ଦୁଇପ୍ରକାରର। ଗୋଟିଏ ଦଳ ବସ୍ତ୍ରରହିତ, ଏବଂ ଆଉ ଗୋଟିଏ ଦଳ ବସ୍ତ୍ରସହିତ। ସେମାନେ କେଉଁଠୁ ଆସିଛନ୍ତି, ଘର କେଉଁଠି ପଚାରିଲେ କୁହନ୍ତିନି। ଅବଶ୍ୟ ସେମାନଙ୍କ ମଧ୍ୟରେ କୌଣସି କୁପ୍ରବୃତ୍ତି ମୋର ଦୃଷ୍ଟିଗୋଚର ହେଲାନାହିଁ। ସେମାନେ ତାଙ୍କର କାର୍ଯ୍ୟକଳାପକୁ ନେଇ ବ୍ୟସ୍ତ। ମାତ୍ର ଯେଉଁମାନେ ରାସ୍ତାକୁ ଓହ୍ଲାଇଆସି ପ୍ରବଚନ ଦେଉଛନ୍ତି ଓ ଅଜସ୍ର ଭକ୍ତ ସୃଷ୍ଟି କରୁଛନ୍ତି, ସେମାନଙ୍କୁ ଦର୍ଶନ କଲେ ମନରେ ସନ୍ଦେହ ସୃଷ୍ଟି ହେଉଛି ।

ମୋର କହିବାର କଥା ହେଲା-- ଆମେ ଅନ୍ତରର ନିଷ୍ଠା ସହିତ ଈଶ୍ୱରଙ୍କୁ ପ୍ରାର୍ଥନା କରି ଆମର ଭଲମନ୍ଦ, ପାପପୁଣ୍ୟ, କାର୍ଯ୍ୟକଳାପକୁ ଆମେ ସ୍ୱୟଂ ପରିଚାଳିତ କରିବା। ସେହି ଈଶ୍ୱର ହିଁ ସବୁକିଛି ଠିକ୍ କରିବେ। ମାତ୍ର ଏପରି ବାବାମାନଙ୍କର ଅନୁଗାମୀ ହେଲେ ଯେଉଁ ପ୍ରକାରର ଅସୁବିଧାରେ ପଡ଼ିବା, ତାହା ମାରାତ୍ମକ ହୋଇପାରେ ।

କେବଳ ଆମର ହୃଦୟ୍ ମଧ୍ୟରେ ଖାଲି ସ୍ଥାନଟିଏ ଦରକାର, ଯେଉଁଠାରେ ପ୍ରଭୁଙ୍କର କରୁଣା ରହିପାରିବ। ନାନା କୁଚିନ୍ତାରେ, ଲୋଭାସକ୍ତ ଭାବରେ, ସ୍ୱାର୍ଥପର ଭାବ ଇତ୍ୟାଦିରେ ଆମ ହୃଦୟ୍ ପୂର୍ଣ୍ଣ ଥିଲେ, ତାହା ପ୍ରବେଶ କରିବାରେ ବାଧା ସୃଷ୍ଟି ହେବ। ତା'ହେଲେ ସାଧୁସନ୍ଥଙ୍କର କ'ଣ ଆବଶ୍ୟକତା ?

--ଅନସୂୟା ନନ୍ଦ



**ଛୁଆଁଛାଇଁ**

# କୁଆଁର ପୁନେଇଁ

ଅଧ୍ୟାପକ ଭାସ୍କର ଚନ୍ଦ୍ର ଖଟାଇ

ଆମର ଏଇ ପୁଣ୍ୟଭୂମି ଭାରତରେ କେତେ ପର୍ବ-ପର୍ବାଣି ଏବଂ ଆନନ୍ଦଉତ୍ସବ ପାଳିତ ହୁଏ, ତାର ପୃଷ୍ଠଭୂମିରେ ଥାଏ ଏକ ଅମୃତମୟ ଉଦ୍ଦେଶ୍ୟ। ଆମର ସମସ୍ତ ପର୍ବପର୍ବାଣିର ମର୍ମବାଣୀ ହେଉଛି ଧର୍ମ ଓ ପୁଣ୍ୟର ବିଜୟ; ଉଦ୍‌ଘୋଷଣ ଏବଂ ଏକ ଉନ୍ନତ ସଭ୍ୟତାର ସଂସ୍କୃତି ପାଇଁ ମାନବିକତାର ଜାଗରଣ। ଧର୍ମ ସହିତ ପର୍ବପର୍ବାଣିର ଏକ ଘନିଷ୍ଠ ସମ୍ପର୍କ ରହିଅଛି, ଯାହା ସାମାଜିକ ଜୀବନକୁ ଦୃଢ଼ ଭାବରେ ଧାରଣ କରି ରଖେ, ତାହା ହିଁ ଧର୍ମ ବୋଲି ସଂସ୍କୃତ ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି। ଧର୍ମ ହେଉଛି ଏକ ବିଶ୍ୱାସ, ଆସ୍ଥା, ଯାହା ମନୁଷ୍ୟ ଜୀବନକୁ ଶୃଙ୍ଖଳିତ କରେ । ଜୀବନର ଶୃଙ୍ଖଳିତ ଉପଲବ୍ଧିରେ ଏଇ ପର୍ବପର୍ବାଣି ତାର ନୀତିନିୟମ, ସହସ୍ର ବିଧିନିଷେଧର ଆଡ଼ମ୍ବର ନେଇ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ।

ପର୍ବପର୍ବାଣି ପାଳନ ଏଇ ଧର୍ମୀୟ ବିଶ୍ୱାସର ଅଙ୍ଗସ୍ୱରୂପ, ପ୍ରତ୍ୟେକ କ୍ଷେତ୍ରରେ ଯାହାର ଯୌକ୍ତିକତା ହୁଏତ ଖୋଜି ପାଇବା ସମ୍ଭବ ନୁହେଁ। ଆମର ହେତୁବାଦୀ ମନରେ ଏଗୁଡ଼ିକର ପ୍ରୟୋଜନୀୟତା ଧରାପଡ଼ିବା ସହଜ ନୁହେଁ। ମାତ୍ର ସଫଳ ସମାଜ ଜୀବନରେ ନିୟମ ବା ଶୃଙ୍ଖଳାର ପ୍ରୟୋଜନ ଥିବାରୁ ଆବହମାନ କାଳରୁ ଏଗୁଡ଼ିକର ସୃଷ୍ଟି ହୋଇ ସମାଜ ଜୀବନ ସହିତ ଏହାକୁ ବାନ୍ଧି ଦିଆଯାଇଛି।

ସେଥିପାଇଁ ଉତ୍କଳରେ ପ୍ରଚଳିତ ପର୍ବପର୍ବାଣି ଜଗନ୍ନାଥ ମନ୍ଦିରରେ ପ୍ରଚଳିତ ଯାତ୍ରାର ଏକ ସାର୍ବଜନୀନ ପ୍ରତିରୂପ। ଜଗନ୍ନାଥ ମନ୍ଦିରରେ ପ୍ରଚଳିତ ପର୍ବପର୍ବାଣି ହିଁ ମୂଳତଃ ଓଡ଼ିଶାର ପର୍ବପର୍ବାଣି। ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ପର୍ବମାନଙ୍କ ମଧ୍ୟରୁ 'କୁମାର ପୂର୍ଣ୍ଣମୀ' ଏକ ବିଶିଷ୍ଟ ପର୍ବ । 'ରଜପର୍ବ' ଭଳି 'କୁମାର ପୂର୍ଣ୍ଣମୀ' ମଧ୍ୟ ଓଡ଼ିଶାର ନିଜସ୍ୱ ଏବଂ ଏହା ଏକ ଖାଣ୍ଟି ଓଡ଼ିଆ ପର୍ବ। ଆଶ୍ୱିନ-ମାସ ପୂର୍ଣ୍ଣମୀ ତିଥିରେ ପାଳିତ ହେଉଥିବା 'କୁମାର ପୂର୍ଣ୍ଣମୀ' ଓଡ଼ିଶାର ପୁରପଲ୍ଲୀରେ ଏକ ଅତ୍ୟନ୍ତ ଲୋକପ୍ରିୟ ଉତ୍ସବ। ଏଇ ପର୍ବ କେବଳ କୁମାରୀମାନଙ୍କ ମଧ୍ୟରେ ସୀମିତ ରହିଥିଲେ ହେଁ ନାମକରଣରୁ ଅନୁମାନ କରାଯାଇପାରେ ଯେ କୁମାରମାନେ ମଧ୍ୟ ଏହାର ଅନ୍ତର୍ଭୁକ୍ତ ଥିଲେ। ଏହି ପୂର୍ଣ୍ଣିମାରେ ସାଧାରଣତଃ କୁମାରୀମାନେ 'ଚାନ୍ଦ'କୁ ପୂଜା କରି ତରୁଣ ସ୍ୱାମୀ ପାଇବାର କାମନା କରିଥାନ୍ତି। ଲିଆରେ ନିର୍ମିତ



ହୋଇଥିବା ଏହି ଚାନ୍ଦପୂଜାରେ ସାମାନ୍ୟ ଉଚ୍ଛୁର ହୋଇଗଲେ କୁମାରୀଙ୍କୁ ବୁଢ଼ା ବର ମିଳିଯିବାର ଏବେ ମଧ୍ୟ ପ୍ରଚଳିତ ଅଛି।

**କୁଆଁର ପୂନେଇଁର ନାମକରଣ ଓ ବୈଶିଷ୍ଟ୍ୟ--**

ଏକ ପୌରାଣିକ ଆଖ୍ୟାନ ଅନୁସାରେ ଜଣାଯାଏ ଯେ ଦିନେ ଶ୍ରୀକୃଷ୍ଣ, ରୁକ୍ମିଣୀ ଓ ସତ୍ୟଭାମା ଆଶ୍ୱିନ ପୂର୍ଣ୍ଣିମା ରାତିରେ ବସି ପଶା ଖେଳୁଥିବା ସମୟରେ କଟା ନାମକ ରାକ୍ଷସ ଶକ୍ରାଜିତ ମଣି ଲୋଭରେ ସେ ସ୍ଥାନରେ ଉପସ୍ଥିତ ହେଲା। ସତ୍ୟଭାମାଙ୍କ ଆଦରଶ୍ରେଷ୍ଠ ଅଳଙ୍କାରରୂପକ ଏହି ମଣିଟି ରାକ୍ଷସ ଦ୍ୱାରା ଅପହୃତ ହୋଇଯିବ ଜାଣି ବାହନ ଗରୁଡ଼ ସେହିଠାରେ କଟାରାକ୍ଷସର ମୁଣ୍ଡ ଗଣ୍ଡି ଅଲଗା କରିଦେଲେ। କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ରାତ୍ର ଶେଷ ବେଳକୁ କଟାରାକ୍ଷସ ପୁନର୍ବାର ବଞ୍ଚି ଉଠିଥିଲା। ସତ୍ୟଭାମା କୃଷ୍ଣଙ୍କୁ ଏହାର କାରଣ ପଚାରନ୍ତେ କୃଷ୍ଣ କହିଲେ, "ଏହା ହେଉଛି ଆଜିର ଦିନର ବୈଶିଷ୍ଟ୍ୟ। ଅର୍ଥାତ୍ କୁମାର ପୂର୍ଣ୍ଣମୀ ରାତିରେ ଚନ୍ଦ୍ରାଲୋକରୁ ଅମୃତ ବୃଷ୍ଟି ହେଉଥିବାରୁ, ସେହି ଅମୃତର ସ୍ପର୍ଶରେ ଦୁର୍ଦ୍ଦାନ୍ତ ରାକ୍ଷସ ପୁନର୍ବାର ଜୀବନଲାଭ କରିବା ସମ୍ଭବ ହୋଇଛି।" ଉପାଖ୍ୟାନଟିରେ କୁମାର ପୂର୍ଣ୍ଣମୀ ଦିନଟିର ବୈଶିଷ୍ଟ୍ୟ ହିଁ ପ୍ରତିପାଦିତ ହୋଇଛି। ମୃତବ୍ୟକ୍ତି ଅମୃତ ସ୍ପର୍ଶରେ ପୁନର୍ଜୀବିତ ହେବା କେବଳ କୁମାର ପୂର୍ଣ୍ଣମୀରେ ହିଁ ସମ୍ଭବ। ଅନ୍ୟ କୌଣସି ପୂର୍ଣ୍ଣମୀ ରାତିରେ ଏହା ସମ୍ଭବ ନୁହେଁ। ଅତୀତର ସ୍ମୃତିକୁ ସ୍ମରଣ କରିବା ପାଇଁ, ଦିବସଟିର ମହତ୍ତ୍ୱ ପ୍ରଖ୍ୟାପନ ପାଇଁ ଆମେ କୁଆଁର ପୂନେଇଁ ପର୍ବ ପାଳନ କରୁଛୁ।

ଆଶ୍ୱିନ ମାସର ଏହି ପୂର୍ଣ୍ଣିମା ପୁଣି ସଂସ୍କୃତରେ 'କୋଜାଗର ପୂର୍ଣ୍ଣିମା' ନାମରେ ଅଭିହିତ। ସଂସ୍କୃତ 'ବ୍ରହ୍ମାଣ୍ଡ ପୁରାଣ'ରେ କୋଜାଗର ପର୍ବର ବିଧାନମାନ ଉଲ୍ଲିଖିତ ହୋଇଛି ଏବଂ ଆବାଳବୃଦ୍ଧବନିତା ସମସ୍ତଙ୍କର ତାହା ପାଳନୀୟ। ଏହି ଦିନର ପବିତ୍ରତା ସମ୍ପର୍କରେ ପଞ୍ଜିକାକାର କହନ୍ତି, ପୂର୍ଣ୍ଣିମାର ଚନ୍ଦ୍ରପୂଜା ଓ ଉପବାସାଦି "ଶ୍ରୀଲକ୍ଷ୍ମୀଦେବୀ ପୂଜନଂ ରାତ୍ରୌ ଜାଗରଣଂ କୁମାରକୁମାରୀଣାଂ ନବବସ୍ତ୍ର ପରିଧାନ ବନ୍ଧୁଜନୈଃ ସହ ନାରିକେଳ ଭକ୍ଷଣଂ।"

ଏହି ପୂର୍ଣ୍ଣିମା ଦିନ ଲକ୍ଷ୍ମୀଦେବୀଙ୍କର ମଧ୍ୟ ପୂଜା କରାଯାଇଥାଏ। ସୌଭାଗ୍ୟ, ସୌନ୍ଦର୍ଯ୍ୟ, ସମ୍ପଦର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଶ୍ରୀଲକ୍ଷ୍ମୀ। ଏ ରାତିରେ ଯେ ନାରିକେଳ ଜଳପାନ କରି ଉଜାଗର ରହେ, ଲକ୍ଷ୍ମୀ ତାର ଘର ଧନଧାନ୍ୟରେ ପରିପୂର୍ଣ୍ଣ କରି ଦିଅନ୍ତି। ଅନ୍ୟତ୍ର ପୁଣି କୁହାଯାଇଛି--

"ନିଶୀଥେ ବରଦା ଲକ୍ଷ୍ମୀଃ ଯୋ ଜାଗର୍ତ୍ତୀତି ଭାଷିନୀ ।
ତସ୍ମୈ ବିତଂ ପ୍ରଯଚ୍ଛାତି ଅକ୍ଷୈଃ କ୍ରୀଡ଼ାଂ କରୋତି ଯଃ।"



ଯିଏ ରାତ୍ରି ଉଜାଗର ରହି ପଶାଖେଳରେ ନିଯୁକ୍ତ ରହେ, ତାହାକୁ ହିଁ ଲକ୍ଷ୍ମୀଦେବୀ ବରପ୍ରଦାନ କରନ୍ତି। କୁମାର ପୂର୍ଣ୍ଣମୀ ରାତିରେ ଏଇ ପଶାଖେଳର ଏକ ବୈଶିଷ୍ଟ୍ୟ ମଧ୍ୟ ରହିଛି। ଯଥା-- ସଂସାରଟା ପଶାଖେଳ ସହିତ ସମାନ। ପଶାଖେଳର ସାର ବା ପଶାଗୋଟିଗୁଡ଼ିକ ମଧ୍ୟରୁ କେଉଁ ସାର ବା ଗୋଟି ନିର୍ବିଘ୍ନରେ ପାଚିଯାଏ ତ କିଏ କଞ୍ଚା ଅବସ୍ଥାରେ ମରିଯାଏ। ପୁଣି କାହାରି ଖେଳ ପାଚି ଯିବାର ସମସ୍ତ ସମ୍ଭାବନା ଥିଲେ ମଧ୍ୟ ଶେଷ ମୁହୂର୍ତ୍ତରେ ତାହା କଞ୍ଚା ହୋଇଯାଏ। ଏପରି ଉତ୍‌ଥାନ, ପତନ, ଦୌଡ଼ ଓ ପ୍ରତିଯୋଗିତାର ଚିତ୍ର ସଂସାରରେ ସୁସ୍ପଷ୍ଟ । ମୃତ୍ୟୁର କରାଳ କବଳରେ ନବଜାତକ ଅକସ୍ମାତ ପତିତ ହେବା କିମ୍ବା ପୌଷର ଶୁଷ୍କ ପତ୍ରତୁଲ୍ୟ ବୃଦ୍ଧଗଣ ମୃତ୍ୟୁ ପ୍ରତୀକ୍ଷାରେ ଅତିଷ୍ଠ ହୋଇ ଉଠିବା-- ଏ ତ ସଂସାର ନିୟମ। ଏହାରି ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତି ହେଉଛି ପଶାଖେଳ। ତେଣୁ କୁମାର ପୂର୍ଣ୍ଣମୀରେ ପଶାଖେଳର ପ୍ରଚଳନ-- ଏଇ ସାଂସାରିକ ତତ୍ତ୍ୱର ଉପଲବ୍ଧି ପାଇଁ। ବ୍ରହ୍ମାଣ୍ଡ ପୁରାଣ ବ୍ୟତୀତ ଲିଙ୍ଗ ପୁରାଣରେ ମଧ୍ୟ ଏ କୋଜାଗର ପୂର୍ଣ୍ଣିମାର ମହତ୍ତ୍ୱ ପ୍ରତିପାଦିତ ହୋଇଥିବାରୁ, ଏ ପୂନେଇଁ ଯେ ବହୁ ପ୍ରାଚୀନକାଳରୁ ସମସ୍ତଙ୍କ ଜୀବନରେ ରେଖାପାତ କରୁଛି, ଏଥିରେ ସନ୍ଦେହ ନାହିଁ।

ଆୟୁର୍ବେଦ ଶାସ୍ତ୍ରପ୍ରଣେତା ମହର୍ଷି ଶୂଶ୍ରୁତଙ୍କ ମତରେ-- କୁମାର୍ ନାମକ ଏକ ଗ୍ରହ ଅଛି ଏବଂ ବାଳକମାନଙ୍କ ପ୍ରତି ତା'ର୍ ଉପଦ୍ରବ ପରିଲକ୍ଷିତ। ତେଣୁ ସେହି କୁମାର ଗ୍ରହକୁ ସନ୍ତୁଷ୍ଟ କରି ବାଳକ ବାଳିକାମାନଙ୍କୁ ତା'କବଳରୁ ମୁକ୍ତିଲାଭ କରାଇବା ହିଁ ହେଉଛି କୁମାର୍ ପୂର୍ଣ୍ଣିମାର ଅନ୍ୟତମ ବୈଶିଷ୍ଟ୍ୟ।

ପୁଣି କେତେକ ମତ ପ୍ରଦାନ କରନ୍ତି ଯେ, ଏଇ ତିଥିରେ ଚନ୍ଦ୍ର ଅଶ୍ୱିନୀ ନକ୍ଷତ୍ରରେ ରହୁଥିବାରୁ ଅଶ୍ୱିନୀକୁମାରଙ୍କ ନାମରେ ଏଇ ପୂନେଇଁ ନାମିତ। କିନ୍ତୁ 'ଗଦାଧର ପଦ୍ଧତି' ଅନୁଯାୟୀ ଏହି ଦିନଟି 'କୁମାର' ବା କାର୍ତ୍ତିକେୟଙ୍କ ଜନ୍ମଦିନ। ଆଶ୍ୱିନ ମାସ ଶେଷରେ ଓ କାର୍ତ୍ତିକ ମାସ ଆରମ୍ଭର ପୂର୍ବ ଦିନରେ ଏ ତିଥିଟି ପଡୁଥିବାରୁ ଶ୍ରେଷ୍ଠ ସୁନ୍ଦର ଯୁବା କାର୍ତ୍ତିକ ବା କୁମାରଙ୍କ ନାମରେ ଏ ପୂନେଇଁର ନାମକରଣ। ଗୋସ୍ୱାମୀମାନଙ୍କ ମତରେ କିନ୍ତୁ ଏହା ହେଉଛି ରାସପୂର୍ଣ୍ଣିମା। ଜାତୀୟ ଜୀବନର ସୌନ୍ଦର୍ଯ୍ୟାନୁରାଗ, ପ୍ରାକୃତିକ ଶୋଭା ପ୍ରତି ତନ୍ମୟତା ଜୀବନର ସରଳ, ସ୍ୱଚ୍ଛନ୍ଦ ଉପଭୋଗ ଲାଗି ଗଭୀର ପ୍ରୀତିର ନିଦର୍ଶନ ଏବଂ କୁମାରୀ ଜୀବନର ଆଶା ଆକାଂକ୍ଷାର କବିତ୍ୱପୂର୍ଣ୍ଣ ଅଭିବ୍ୟକ୍ତି ପାଇଁ ଏହି ପର୍ବଟି ଏକ ଜାତୀୟପର୍ବ ଭାବରେ ପାଳିତ ହୋଇଥାଏ।

*ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ*

(କୁମାରୋତ୍ସବ ପତ୍ରିକାରୁ ସଂଗୃହୀତ)

# ୨୦୧୩ ମସିହାର ସମ୍ମାନିତ କୃତୀ ଲେଖକବୃନ୍ଦ

## ଡଃ ସୁରେନ୍ଦ୍ର ନାଥ ତ୍ରିପାଠୀ

ପିତା- ଏ ପଣ୍ଡିତ ରତ୍ନାକର ତ୍ରିପାଠୀ, ମାତା- କାଞ୍ଚନ ଦେବୀ, ଜନ୍ମ- ୯.୨.୧୯୬୦, ଶିକ୍ଷାଗତ ଯୋଗ୍ୟତା- ଏମ୍.ଏ., ପିଏଚ୍. ଡି. (ଓଡ଼ିଆ), ବି.ଇଡି.। ବର୍ତ୍ତମାନ ଦେବଗଡ଼ର ଜବାହର ନବୋଦୟ ବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ ଅଛନ୍ତି ।

ଶିଶୁ ଗଳ୍ପ ପୁସ୍ତକ 'ସାଙ୍ଗ ନୁହେଁ ଗୁରୁ', 'ଜୀବନ ତଥ୍ୟ' ଓ ୧୨ଗୋଟି ପୁସ୍ତକ ଲେଖକଙ୍କ ଦ୍ୱାରା ପ୍ରକାଶିତ।

**ଶିଶୁ ସାହିତ୍ୟ ସମ୍ବର୍ଦ୍ଧନା ସମୂହ-** ନୀଳକଣ୍ଠେଶ୍ୱର ସାହିତ୍ୟ ସଂସଦ ସମ୍ମାନ, ଟିଟିଙ୍ଗା, ମଣ୍ଡାସାହି, ଜଗତସିଂହପୁର; ଜଗତସିଂହପୁର ଜିଲ୍ଲା ଉତ୍ସବ ସମ୍ବର୍ଦ୍ଧନା-୨୦୧୨; ରଜତ ଜୟନ୍ତୀ ସମ୍ବର୍ଦ୍ଧନା-ଶ୍ରେଷ୍ଠ ଶିକ୍ଷାବିତ୍, ଜବହାର ନବୋଦୟ ବିଦ୍ୟାଳୟ, ହଦଗଡ଼, କେନ୍ଦୁଝର; ପ୍ରତିଭା ପୂଜା ସଂସଦ, କଟକ; ମାଟିପୁତ୍ର ସୁଭାଷ ଜୟନ୍ତୀ ସମାରୋହ-୨୦୧୨, କୁଚିଣ୍ଡା, ସମ୍ବଲପୁର; ଧନ୍ୱନ୍ତରୀ ସମ୍ମାନ, ଭୁବନେଶ୍ୱର; ନବଦିଗନ୍ତ ସାହିତ୍ୟ ସଂସଦ, ରିଆମାଳ, ଦେବଗଡ଼; ତୁଳସୀ ସମ୍ମାନ, ନହରପଡ଼ା, ବାରିପଦା, ମୟୂରଭଞ୍ଜ; .... ଇତ୍ୟାଦି ଆହୁରି ଅନେକ। ✻✻

---

(ଧନ୍ଦାର ଉତ୍ତର- ପତିତପାବନ)

## ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟି

ପିତା- ସ୍ୱର୍ଗତ ପ୍ରଫୁଲ୍ଲ କୁମାର ପୃଷ୍ଟି, ମାତା- ଲାବଣ୍ୟ ପୃଷ୍ଟି, ଜନ୍ମ- ୨.୬.୧୯୭୬, ଶିକ୍ଷାଗତ ଯୋଗ୍ୟତା- ବି.ଏ. ରାଷ୍ଟ୍ରଭାଷା ରତ୍ନ, ବି.ଏଚ୍.ଇଡ଼ି। ବୃତ୍ତି- ଶିକ୍ଷକତା, କିଶୋର ନଗର ଉଚ୍ଚ ବିଦ୍ୟାଳୟ, ଅନୁଗୁଳ।

ଶିଶୁ ସାହିତ୍ୟ, ହାସ୍ୟ-ବ୍ୟଙ୍ଗ ସାହିତ୍ୟ, ଯୁବ ସାହିତ୍ୟ ପ୍ରଭୃତି କ୍ଷେତ୍ରରେ ଲେଖନୀ ଚାଳନା। ଏ ସମ୍ପର୍କିତ ଅନେକ ଲେଖା ଆକାଶବାଣୀ କଟକ ଓ ସମ୍ବଲପୁର କେନ୍ଦ୍ରରୁ ପ୍ରଚାରିତ। ପ୍ରାୟ ୭୦୦ରୁ ଊର୍ଦ୍ଧ୍ୱ ଶିଶୁସାହିତ୍ୟ ଓଡ଼ିଶାରୁ ପ୍ରକାଶିତ ପତ୍ରିକା ତଥା ସମ୍ବାଦପତ୍ରର ଶିଶୁସାହିତ୍ୟ ପୃଷ୍ଠାରେ ପ୍ରକାଶିତ। ପ୍ରବନ୍ଧ, ରମ୍ୟରଚନା ମଧ୍ୟ ପ୍ରକାଶିତ।

**ପ୍ରକାଶିତ ପୁସ୍ତକ-** ଜମେଇଦେଲା ମାଙ୍କଡ଼ବାଲା, ବିଲେଇ ମାରିଚି ଡିଆଁ, ଇତ୍ୟାଦି ୧୨ଟି ।

**ଶିଶୁ ସାହିତ୍ୟ ସମ୍ମାନ-** ଶିଶୁସାହିତ୍ୟ ସମ୍ମାନ(ଛେଣ୍ଡିପଦା); 'ସମ୍ବାଦ-ଆମ ଓଡ଼ିଶା' ଦ୍ୱାରା ସମ୍ବର୍ଦ୍ଧିତ; କବିଭୂଷଣ ସାହିତ୍ୟ ସଂସଦ, (ଢେଙ୍କାନାଳ); ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ (ପୁରୀ); ଅକ୍ଷର ଶିଶୁ ସାହିତ୍ୟ ସମ୍ମାନ (ବଲାଙ୍ଗୀର); ଶିଶୁ ସାହିତ୍ୟ ଲେଖକ ସମ୍ମାନ(କଟକ); ଭୀମଭୋଇ ସାହିତ୍ୟ ସଂସଦ ତରଫରୁ ସମ୍ମାନିତ (ରେଢ଼ାଖୋଲ); ଝୁମୁକା ସମ୍ମାନ .... ଆହୁରି ଅନେକ ।

ରାଜ୍ୟ ସରକାରଙ୍କ ଦ୍ୱାରା କୃତୀ ଶିକ୍ଷକ ଭାବରେ ମନୋନୀତ ହୋଇ ନୂଆଦିଲ୍ଲୀ ସି.ସି.ଆର୍.ଟି କାର୍ଯ୍ୟକ୍ରମରେ ଅଂଶଗ୍ରହଣ। ସମାଜସେବୀ ତଥା ଆକାଶବାଣୀ କଥାକାର।

✻✻



**ଶ୍ରୀ ସୁଧାଂଶୁ ଶେଖର ଦ୍ୱିବେଦୀ**

ପିତା- ପ୍ରାଣବନ୍ଧୁ ଦ୍ୱିବେଦୀ, ମାତା- ଶାନ୍ତିଲତା ଦ୍ୱିବେଦୀ, ଜନ୍ମ- ୮.୮.୧୯୬୮ ମସିହା, ଠିକଣା- ବ୍ୟାସ, ବିଡ଼ି- ୨୬୬, ସେକ୍ଟର- ୧, ସଲ୍ଟ ଲେକ୍, କଲକତା-୭୦୦୦୬୪
ବୃତ୍ତି- ଯୋଗ ବିଦ୍ୟାଳୟ ପରିଚାଳନା।
କାଳୀପୂଜା ଉତ୍ସବରେ ନାଟକ ଓ ନାଟ୍ୟକାର ସମ୍ମାନ ଓ ରୌପ୍ୟ ପଦକପ୍ରାପ୍ତ, ପଥପ୍ରାନ୍ତ ନାଟକ ପାଇଁ ସମ୍ମାନିତ ।
ଗଳ୍ପ ପୁସ୍ତକ 'ଢୋଲ ବାଜିଲେ ନାକ ବଢ଼ିବ' ପ୍ରକାଶିତ ।

ଯୋଗ ବିଷୟରେ ଶିକ୍ଷାଦାନ କରିବାରେ ସଂପୃକ୍ତ।

✻✻



**ଶ୍ରୀ ଜ୍ୟୋତିରଞ୍ଜନ ବିଶ୍ୱାଳ**

ପିତା- ସ୍ୱର୍ଗତ ପୁରୁଷୋତ୍ତମ ବିଶ୍ୱାଳ, ମାତା- ଜାନକୀ ବିଶ୍ୱାଳ, ଜନ୍ମସ୍ଥାନ- ଦୁର୍ଗାପୁର, ଅନୁଗୁଳ, ଜନ୍ମ- ୧୯୭୧ ମସିହା
ବୃତ୍ତି- ପ୍ରଧାନ ଶିକ୍ଷକ, ଟିକିରିମା ପ୍ରାଥମିକ ବିଦ୍ୟାଳୟ, କଣିହାଁ ।
ରୁଚି- ପୁସ୍ତକ ତଥା ପତ୍ରପତ୍ରିକା ପଢ଼ିବା, ସଙ୍ଗୀତପ୍ରିୟ ଓ ଡାକଟିକେଟ୍ ସଂଗ୍ରହ ।

ଗ୍ରାମାଞ୍ଚଳରେ ରହି ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କରିବାରେ ରତ।

✻✻



## ସ୍ମୃତି ତର୍ପଣ

ଶ୍ରୀ ରବୀନ୍ଦ୍ର ପ୍ରସାଦ ଚାନ୍ଦ

ସ୍ମୃତିର ରଙ୍ଗରେ ପଢ଼େଇ ଦେଉଛ
କେଉଁ ସଂସାରଟି ସତ
ଅଦୃଶ୍ୟ ଆଖିରେ ସବୁ ଦେଖିନେଇ
କହି ଦେଉଅଛ ପଥ।୧।
ସ୍ଥୂଳ ଶରୀରଟା ମିଶିଗଲା ସିନା
ସୂକ୍ଷ୍ମ ରହିଗଲା କୀର୍ତ୍ତି
ତୁମରି ଜ୍ୟୋତିର ପ୍ରତ୍ୟେକ ସାଧକ
ଲଭିଲା ପରମ ଶକ୍ତି।୨।
'ସଂସାର' ପତ୍ରିକା ବଦଳାଇ ଦେବ
ଏ ସଂସାର ଦୁଃଖକଷ୍ଟ
ପୂଜ୍ୟ-ପୂଜାରୀଙ୍କୁ ପୂଜା କରିଯିବ
କହିବ କିଏ ତା' ଇଷ୍ଟ।୩।
ବଜାଇଦେବ ସେ ପ୍ରାର୍ଥନା ରାଗେଣୀ
ଆହେ ଦୟାମୟ ସୁରେ
ସତ୍ୟ ଧର୍ମ ଶାନ୍ତି ପ୍ରେମ ଅହିଂସାରେ
ଯୋଗ୍ୟତାର ଘରେ ଘରେ।୪।
ଏହି ସ୍ମୃତି ଅଟେ ଅଲିଭା ସଳିତା
ଓଡ଼ିଆର ଇତିହାସ
ସାରସ୍ୱତ ପୀଠ ହାରିନାହିଁ କେବେ
ପୁଣ୍ୟ ଏ ଭାରତବର୍ଷ।୫।

*ଆନନ୍ଦପୁର, କେନ୍ଦୁଝର-୭୫୮୦୨୧*

(ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ଶ୍ରାଦ୍ଧଦିବସ ଉପଲକ୍ଷେ)

# ନଭେମ୍ବର - ୨୦୧୩

ଡକ୍ଟର ନିରଞ୍ଜନ ସାହୁ

**୧ ।** କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
**୨ ।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
**୩ ।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
**୪ ।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
**୫ ।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
**୬ ।** ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୧ । ୧୧ ।୨୦୧୩
**୭ ।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | ୩ | | ୪ | | ୫ |
| ୬ | | | ✤ | ୭ | | |
| ୮ | | | ୯ | ୧୦ | | ୧୧ |
| | | ✤ | ୧୨ | | | |
| ୧୩ | ୧୪ | | | ୧୫ | ୧୬ | |
| ୧୭ | | | ✤ | ୧୮ | | |
| ୧୯ | | | ✤ | ✤ | | ✤ |

## ସୂଚନା

**ବାମରୁ ଡାହାଣକୁ-** ୧ । ପୁରୀର ରାଜା (୪), ୪ । ସୂର୍ଯ୍ୟ (୩), ୬ । ପ୍ରତ୍ୟୁତ୍ତର (୩), ୭ । ପଡ଼ିଯାଇଥିବା (୩), ୮ । ଜଙ୍ଗଲ (୩), ୧୦ । ଅନ୍ଧକାର (୩), ୧୨ । ମୃତ୍ୟୁ (୩), ୧୩ । ପଦ୍ମ (୩), ୧୫ । ସର୍ପ (୩), ୧୭ । ଜିହ୍ୱା (୩), ୧୮ । ମା (୩), ୧୯ । ଗୃହ (୩) ।

**ଉପରୁ ତଳକୁ--** ୧ । ହାତୀ (୨), ୨ । ଯୁବକ (୩), ୩ । ବାୟୁ (୩), ୫ । ନଇଁଥିବା (୨), ୮ । ରମଣୀ (୩), ୯ । କମ ଉଚ୍ଚତାବିଶିଷ୍ଟ ବ୍ୟକ୍ତି (୩), ୧୦ । ଖରାଦିନିଆ ଫଳ (୪), ୧୧ । ହରିଣ (୩), ୧୪ । ଖାଦ୍ୟ ସାମଗ୍ରୀ (୩), ୧୬ । ସୃଷ୍ଟିହେବା (୩) ।

-- ସାହୁପଡ଼ା, ବରୀ, ସୁବର୍ଣ୍ଣପୁର-୭୫୫୦୦୩

**ଅକ୍ଟୋବର ମାସ ଶବ୍ଦଧନ୍ଦାର ଉତ୍ତର** (ବାମରୁ ଡାହାଣ)-- ୧ । ଓସାର, ୪ । ଭାଜନ, ୬ । ଗେଲବସର, ୮ । ରସା, ୯ । ମତଲବ, ୧୧ । ଓସା, ୧୨ । ପଣ, ୧୩ । ରମଜାନ, ୧୫ । ଅମାୟିକ, ୧୭ । ଅଚାନକ, ୧୮ । ଖେପ/କ୍ଷେପ ।

ଉପରୁ ତଳ-- ୧ । ଓଗେର, ୨ । ସାଲସା, ୩ । ରବ, ୪ । ଭାରତ, ୫ । ନଳବଣ, ୭ । ସମସାମୟିକ, ୧୦ । ଲପନ, ୧୧ । ଓରମାନ, ୧୪ । ଜାକ, ୧୫ । ଅଚା, ୧୬ । ପାପ ।

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତା (ଏ ପର୍ଯ୍ୟନ୍ତ ହସ୍ତଗତ ହୋଇଥିବା)-- **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର; **ସ୍ୱରୂପ କୁମାର ସାହୁ** ଓ **ପୁରୁଷୋତ୍ତମ ବାରିକ** (୯ମ ଶ୍ରେଣୀ) ଚମ୍ପୁଆ, କେନ୍ଦୁଝର ।

ଏକ ଭୁଲ ଉତ୍ତର-- **କମଳ କୁମାର ସାହୁ,** କେନ୍ଦ୍ରୀୟ ବିଦ୍ୟାଳୟ, ଭଦ୍ରକ ।

ବିଳମ୍ବରେ ଆସିଥିବା ସେପ୍ଟେମ୍ବର ମାସର ଠିକ୍ ଉତ୍ତରଦାତା-- **ଲୋପାମୁଦ୍ରା ସାହୁ,** ନିମେଇପୁର, ଢେଙ୍କାନାଳ; **ପ୍ରଦୀପ କୁମାର ଦାଶ,** ହରିଶଙ୍କର ରୋଡ, ବଲାଙ୍ଗିର;

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୨। ୯-- ନୋଏଡାଠାରେ ବାଲ୍ୟବିବାହକୁ ବିରୋଧ କରି ଓଡ଼ିଆ ଯୁବତୀ ଲିଙ୍କନ ସୁବୁଦ୍ଧିଙ୍କ ଉପରେ ମରଣାନ୍ତକ ଆକ୍ରମଣ।

୨୪।୯-- ରେଭେନ୍ସା ବିଶ୍ୱବିଦ୍ୟାଳୟ ପରିସରରେ ଶୈକ୍ଷିକ ପରିବେଶ ନଷ୍ଟ ହୋଇଥିବାରୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ।

୨୯।୯-- ଓଡ଼ିଶା କ୍ରିକେଟ୍ ଆସୋସିଏସନ୍‌ର ସଭାପତି ରଂଜୀବ ବିଶ୍ୱାଳ ଆଇ.ପି.ଏଲ୍‌.ର ନୂତନ ଅଧ୍ୟକ୍ଷ ନିଯୁକ୍ତ।

୩୦।୯-- କଟକରେ ଚାଲିଥିବା ବିଶ୍ୱନାଟ୍ୟମେଳା ପ୍ରତିଯୋଗିତାରେ ବାଲେଶ୍ୱରର 'ନାୟିକା' ନାଟ୍ୟସଂସ୍ଥାର ଓଡ଼ିଆ ନାଟକ 'ଜ' ଶ୍ରେଷ୍ଠ ନାଟକ ବିବେଚିତ।

୨୯।୯-- ସ୍ୱାଧୀନତା ସଂଗ୍ରାମୀମାନଙ୍କ ପେନ୍‌ସନ୍ ୩୦୦୦ ଟଙ୍କାରୁ ୪୦୦୦କୁ ବୃଦ୍ଧି।

୨।୧୦-- ଦଳବିରୋଧୀ କାର୍ଯ୍ୟରେ ସମ୍ପୃକ୍ତ ଥିବା ଅଭିଯୋଗରେ କଂଗ୍ରେସ ନେତା ସୌମ୍ୟରଂଜନ ପଟ୍ଟନାୟକ ଦଳର ପ୍ରାଥମିକ ପଦରୁ ୬ବର୍ଷ ପାଇଁ ବହିଷ୍କୃତ।

୫।୧୦-- ବିଭିନ୍ନ ଶ୍ରେଣୀର ବସ୍ ଭଡ଼ାରେ କି.ମି. ପିଛା ୪ରୁ ୭ ପଇସାକୁ ବୃଦ୍ଧି।

୬।୧୦-- ରାଜ୍ୟ ବିଧାନ ସଭାର ବାଚସ୍ପତି, ସାଂସଦ, ପୂର୍ବତନ ମନ୍ତ୍ରୀ ସୋମନାଥ ରଥଙ୍କର ୯୩ ବର୍ଷରେ ମୃତ୍ୟୁ।

୮।୧୦-- ରାଜ୍ୟ ସରକାରୀ କର୍ମଚାରୀଙ୍କର ମହଙ୍ଗାଭତ୍ତା ୧୦ ପ୍ରତିଶତ ବୃଦ୍ଧି।

୧୦।୧୦-- ଗୁଆହାଟୀ ହାଇକୋର୍ଟର ମୁଖ୍ୟ ବିଚାରପତି ଆଦର୍ଶ କୁମାର ଗୋଏଲ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଭାବେ ନିଯୁକ୍ତ।

--ବୁର୍ଲା ମେଡିକାଲ କଲେଜକୁ ବିଶ୍ୱବିଦ୍ୟାଳୟ ମାନ୍ୟତା ପ୍ରଦାନ।

୧୫।୧୦-- 'ଫାଇଲିନ୍' ବାତ୍ୟା ପରେ ପରେ ଓଡ଼ିଶାରେ ବନ୍ୟା। ବାତ୍ୟାରେ ୨୧ଜଣଙ୍କର ପ୍ରାଣହାନି। ୧୬,୪୮୬ ଗାଁ ପ୍ରଭାବିତ। ବାତ୍ୟା ପୂର୍ବରୁ ୮,୮୩,୫୫୩ଜଣଙ୍କୁ ସ୍ଥାନାନ୍ତର।

୧୬।୧୦-- ବିଶିଷ୍ଟ ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କର ସମ୍ବଲପୁରୀ ଭାଷାର ନିର୍ମିତ ଓଡ଼ିଆ ସିନେମା 'ଶଲାବୁଢ଼ା' ଆନ୍ତର୍ଜାତିକ ଫିଲ୍ମ ମହୋତ୍ସବରେ ପ୍ରଦର୍ଶିତ ହେବ।

୧୮।୧୦-- ଜାତୀୟ ଚ୍ୟାଲେଞ୍ଜର୍ସ ଚେସ୍‌ରେ ଭାଗ ନେଇଥିବା ଦେବାଶିଷ ଦାସଙ୍କର ପ୍ରଥମ ଗ୍ରାଣ୍ଡମାଷ୍ଟର ହାସଲ।

୧୯।୧୦-- ରାଜ୍ୟ ଅର୍ଥନୀତି ଭିଭାଗର ପୂର୍ବତନ ସ୍ୱତନ୍ତ୍ରସଚିବ ଚକ୍ରଧର ମିଶ୍ରଙ୍କର ୮୬ବର୍ଷରେ ପରଲୋକ।

## ଭାରତ ଖବର

୨୧। ୯-- ସ୍କୁଲ ସାର୍ଟିଫିକେଟ୍‌କୁ ବୟସ ପ୍ରମାଣ ଭାବେ ଗ୍ରହଣ କରାଯିବ ବୋଲି ସୁପ୍ରିମ କୋର୍ଟର ନିର୍ଦ୍ଦେଶ ।

୨୩।୯-- ବୁଦାପେଷ୍ଟଠାରେ ଚାଲିଥିବା ବିଶ୍ୱ କୁସ୍ତି ଚମ୍ପିଆନସିପ୍‌ରେ ଭାରତୀୟ ପହିଲିମାନ ସନ୍ଦୀପ ତୁଳସୀ ଯାଦବଙ୍କର ଚମ୍ପିଆନସିପ୍ ହାସଲ।

୨୪।୯-- ଆତ୍ମଘୋଷିତ ଆଧ୍ୟାତ୍ମିକ ଗୁରୁ ଆଶାରାମ ବାପୁ ଗୁରୁତର ଅଭିଯୋଗରେ ଗିରଫ।

୩୦। ୯-- ଗୋଖାଦ୍ୟ ଦୁର୍ନୀତିରେ ଅଭିଯୁକ୍ତ ଲାଲୁ ପ୍ରସାଦ ଯାଦବ ଦୋଷୀ ସାବ୍ୟସ୍ତ ଓ ୫ବର୍ଷ ଜେଲ୍।

୨।୧୦-- ସୁପ୍ରିମ୍ କୋର୍ଟର ରାୟକୁ ଅକାମୀ କରି ଦାଗୀ ସଂସଦ ଓ ବିଧାୟକଙ୍କୁ ସୁରକ୍ଷା ଦେବାଲାଗି ଅଣାଯାଇଥିବା ଅଧ୍ୟାଦେଶ ପ୍ରତ୍ୟାହାର ଲାଗି କେନ୍ଦ୍ର କ୍ୟାବିନେଟ୍‌ର ନିଷ୍ପତ୍ତି।

## ବିଦେଶ ଖବର

୨୨।୯-- ପାକିସ୍ତାନର ଏକ ଚର୍ଚ୍ଚ ଉପରେ ଆତ୍ମଘାତୀ ଅକ୍ରମଣରେ ୮୦ ଜଣଙ୍କର ପ୍ରାଣହାନି ଏବଂ ପଶ୍ଚିମାଞ୍ଚଳରେ ଏକ ଭୂକମ୍ପରେ ୫୫୫ ମୃତ ଓ ଏକ ନୂଆ ଦ୍ୱୀପ ସୃଷ୍ଟି।

୨୩।୯ --କେନିଆର ନାଇରୋବିଠାରେ ୱେଷ୍ଟ୍ ଗେଟ୍ ସପିଙ୍ଗ୍ ମଲ୍‌ରେ ଆତଙ୍କବାଦୀ ଆକ୍ରମଣରେ ୨ ଜଣ ଭାରତୀୟଙ୍କ ସମେତ ୨୨ଜଣଙ୍କର ପ୍ରାଣହାନି ।

୩।୧୦-- ନାଇଜେରିଆରେ ବିମାନ ଦୁର୍ଘଟଣାରେ ୧୩ ମୃତ ଓ ୧୪ ଜଣ ଆହତ। ଏବଂ ଇଟାଲୀୟ ଦ୍ୱୀପ ଲାମ୍ପେଡୁସାରେ ସମୁଦ୍ରତଟରେ ଆଫ୍ରିକୀୟ ଶରଣାର୍ଥୀଙ୍କୁ ନେଇ ଯାଉଥିବା ଏକ ବଡ଼ ଡଙ୍ଗା ବୁଡ଼ି ୩୦୦ଜଣ ମୃତ।

୬।୧୦-- ଆମେରିକାର ଜେମସ୍ ରୋଥମାନ୍, ରୋଣ୍ଡି ଶେକ୍‌ମାନ ଏବଂ ଜର୍ମାନୀର ଥୋମାସ୍ ସୁଡ଼ୋଫଙ୍କୁ ୨୦୧୩ ମସିହାରେ ଭେଷଜ ପାଇଁ ଏବଂ ଈଶ୍ୱର କଣିକା ସନ୍ଧାନୀ ଏଙ୍ଗଲର୍ଟ ଓ ହିଗସ୍‌ଙ୍କୁ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ।

-- ଶ୍ରୀଲଙ୍କାରେ ପ୍ରଥମ ତାମିଲ୍ ମୁଖ୍ୟମନ୍ତ୍ରୀ ଭାବେ ସି.ଭି. ବିଶ୍ୱେଶ୍ୱରନ୍‌ଙ୍କର ଶପଥ ଗ୍ରହଣ।

୧୬।୧୦-- ନ୍ୟୁଜିଲ୍ୟାଣ୍ଡର ଏଲାନର୍ କାର୍ଟନ ଏ ବର୍ଷର୍ ବୁକର ପୁରସ୍କାର ପାଇବେ। ସେ ହେଉଛନ୍ତି ସର୍ବକନିଷ୍ଠ ଲେଖିକା। 'ଦି ଲୁମିନାରିଜ୍' ପାଇଁ ସେ ଏହି ପୁରସ୍କାର ପାଇବେ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009
Ph : 2420075, 2422597